# ବିଲାତ ଅନୁଭୂତିର ଅଭୁଲା କଥା

ବିଲାତ ଅନୁଭୂତିର ଅଭୁଲା କଥା



ଡକ୍ଟର ଦିଗରାଜ ବ୍ରହ୍ମା

# ବିଲାତ ଅନୁଭୂତିର ଅଭୁଲା କଥା

ଲେଖକ :
ଡକ୍ଟର ଦିଗରାଜ ବ୍ରହ୍ମା



ରାଜ୍ୟ କଳା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା
ତେଲେଙ୍ଗାପେଣ୍ଠ, କଟକ - ୭୫୪ ୦୦୧

# ବିଲାତ ଅନୁଭୂତିର ଅଭୁଲା କଥା

*ଲେଖକ :*
**ଡକ୍ଟର ଦିଗରାଜ ବ୍ରହ୍ମା**
୧୬୫୭, ମହାବୀର ବିହାର
(ପଟିଆ ରେଳଷ୍ଟେସନ ପାଖ)
କଳା ରାହାଙ୍ଗ, କୀଟ, ଭୁବନେଶ୍ୱର-୭୫୧୦୨୪
ମୋ.:୯୪୩୭୭୮୪୫୯୨

*ପ୍ରକାଶକ :*
**ସ୍କାର୍ଟ -ଓଡ଼ିଶା**
ତେଲେଙ୍ଗାପେଣ୍ଠ, କଟକ
ମୋ.: ୯୩୩୮୨୨୩୯୯୦

**ପ୍ରଥମ ପ୍ରକାଶ : ୧୪ ଅପ୍ରେଲ, ୨୦୧୨**

*ଅକ୍ଷର ଅଳଂକରଣ, ପ୍ରଚ୍ଛଦ ଓ ମୁଦ୍ରଣ :*
**ଗ୍ରାଫିକ୍ସ ସୁପ୍ରିୟା**
ମାନସିଂହପାଟଣା, କଟକ
ମୋ. : ୯୩୩୮୨୯୯୦୮୦

**ମୂଲ୍ୟ : ଟ. ୬୫.୦୦ ମାତ୍ର**

## BILÃTA ANUBHUTIRA ABHULÃ KATHÃ

*By :* **Dr. Digaraj Brahma**
1657, Mahavir Vihar
Near Patia Rly Station
Kalarahanga, KIIT Bhubaneswar-751024
Mob.:9437784592

*Published by :*
**SCART-ORISSA**
Telengapentha, Cuttack
Mob.:9338223990

**1st. Edition : 14th April, 2012**

*Laser Typeset, Cover & Printed at :*
**Graphics Supriya**
Mansinghpatna, Cuttack
Mob. : 9338299080

**Price : Rs. 65.00 only**

# ପୁସ୍ତକ ସମ୍ପର୍କରେ କିଛି....

ଦୀର୍ଘ ଦୁଇ ଦଶନ୍ଧିତଳେ ମୁଁ ବିଲାତର କାର୍ଲଲାଇଲ ସହରକୁ ଶିକ୍ଷା ଟେଲିଭିଜନ ସଂପର୍କୀୟ ସ୍ୱତନ୍ତ୍ର ପ୍ରଶିକ୍ଷଣ ପାଇବାକୁ ଯାଇଥିଲି । ମୋ ସହିତ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ତତ୍‌କାଳୀନ ଅଧ୍ୟାପକ ଡଃ ପଦ୍ମଚରଣ ମହାନ୍ତି ଓ ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟାପକ ଡଃ ଚିଦାନନ୍ଦ ପାତ୍ର ଯାଇଥିଲେ ।

ବିଲାତରୁ ଫେରିଲା ପରେ ଶିଶୁ ତଥା- କିଶୋର ମାନଙ୍କ ପାଇଁ ଏକ ଅନୁଭୂତି ସଂପନ୍ନ ପୁସ୍ତକ ଲେଖିବାପାଇଁ ମୋର ପୂଜ୍ୟ ଶିକ୍ଷକ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ତତ୍‌କାଳୀନ ଅଧ୍ୟାପକ ଡଃ ମୋହନ ଚରଣ ନାୟକ ପରାମର୍ଶ ଦେଇଥିଲେ । ମୁଁ ସେତେବେଳେ ତାଙ୍କୁ କହିଥିଲି ଯେ ବିଲାତ ଉପରେ ଅନେକ ଶିକ୍ଷଣୀୟ ଭ୍ରମଣ ପୁସ୍ତକ ଅଛି ।

ଡଃ ନାୟକ ମୋ ମନର ଭାବକୁ ବୁଝି ପାରିଲେ ଓ ତତ୍‌କ୍ଷଣାତ୍ କହିଲେ, "ବିଲାତ ଉପରେ ସିନା ଅନେକ ପୁସ୍ତକ ଅଛି; ମାତ୍ର ପ୍ରତ୍ୟେକ ପୁସ୍ତକର ଅନୁଭୂତି ଅନନ୍ୟ । ତେଣୁ ତୁମେ ତୁମର ସେହି ଅନନ୍ୟ ଅନୁଭୂତିକୁ ନେଇ ନବସାକ୍ଷର, ଶିଶୁ- ତଥା କିଶୋର ମାନଙ୍କ ପାଇଁ ଏକ ପୁସ୍ତକ ରଚନା କଲେ ଭଲ ହେବ ।"

ମୁଁ ଡଃ ନାୟକଙ୍କ ସେ ଦିନର ପରାମର୍ଶ ଅନୁସାରେ ଲେଖିଲି । ମାତ୍ର ସେତେବେଳର ସେହି ପାଣ୍ଡୁଲିପିକୁ ରୂପରେଖ ଦେବା ମୋ ପକ୍ଷରେ କଷ୍ଟକର ହେଲା ।

ଅଳ୍ପ କେତେ ଦିନ ତଳେ ସେହି ପୁରୁଣା ପାଣ୍ଡୁଲିପିକୁ ମୁଁ ଆଗ୍ରହର ସହିତ ପଢ଼ିଲି ।

ମୋର ମନେହେଲା ଏହି ପାଣ୍ଡୁଲିପିଟିକୁ ମୁଁ ଡଃ ନାୟକଙ୍କ ପରାମର୍ଶ ଅନୁଯାୟୀ ନବସାକ୍ଷର, ଶିଶୁ ଏବଂ କିଶୋରମାନଙ୍କ ଅନୁଭୂତିକୁ ମାର୍ଜିତ, ବ୍ୟାପକ ଓ ଦୂରଦୃଷ୍ଟିସଂପନ୍ନ କରିବା ନିମନ୍ତେ ଶୈକ୍ଷିକ ଦୃଷ୍ଟିକୋଣରୁ ଉପସ୍ଥାପନା କରିଛି । ସେହିସବୁ ଅନୁଭୂତି ପ୍ରସୂତ ଘଟଣାବଳୀ ନିଶ୍ଚିତଭାବେ ପାଠକମାନଙ୍କ ଦ୍ୱାରା ଆଦୃତ ହେବ ଓ ସେମାନେ ପୁସ୍ତକଟିକୁ ପସନ୍ଦ କରିବେ ।

ପୁସ୍ତକଟିକୁ ପ୍ରକାଶ କରିବା ନିମନ୍ତେ ସ୍ମାର୍ଟ-ଓଡିଶାର ସୁଯୋଗ୍ୟ ସଭାପତି **କଳାଭୂଷଣ ପ୍ରଶାନ୍ତ କୁମାର କର** ଆଗେଇ ଆସିଛନ୍ତି । ତାଙ୍କର ଉଦ୍ୟମ ଓ ପ୍ରଚେଷ୍ଟା ଯୋଗୁଁ ପୁସ୍ତକଟି ପ୍ରକାଶିତ ହୋଇଥିବା ହେତୁ ମୁଁ ସେ ମହାଶୟଙ୍କୁ ଏହାର ପ୍ରକାଶନ ଅବସରରେ ସାଧୁବାଦ ଜଣାଉଛି ଓ ସ୍ମାର୍ଟ-ଓଡିଶାର ସମସ୍ତ କର୍ମକର୍ତ୍ତାମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଅଛି ।

— **ଦିଗ୍‌ରାଜ ବ୍ରହ୍ମା**

# ସୂଚୀପତ୍ର

# ଯାତ୍ରାର ଅୟମାରମ୍ଭ

ଜୀବନ ଏକ ବିରାଟ ଚଲାପଥ । ଏହି ଚଲାପଥରେ ମଣିଷ ଚାଲୁ ଚାଲୁ ଅନେକ ସୁଯୋଗ ପାଇଥାଏ । ପୁଣି ଅନେକ ସୁଯୋଗ ମଧ୍ୟ ହାତଛଡା କରିଥାଏ । ସୁଯୋଗଟିଏ ପାଇବା ପାଇଁ ମଣିଷର ସାଧନା ଦରକାର ହୁଏ । ସାଧନା ଠିକ୍ ଥିଲେ ସିଦ୍ଧି ମଧ୍ୟ ଆପେ ଆପେ ମିଳିଥାଏ ।

ସେହିଭଳି ଏକ ସୁଯୋଗ ମୋତେ ୧୯୮୨ ମସିହାରେ ମିଳିଥିଲା । ସେତେବେଳେ ମୁଁ ସମ୍ବଲପୁର ସରକାରୀ ପ୍ରଶିକ୍ଷିଣ ମହାବିଦ୍ୟାଳୟ (ବର୍ତ୍ତମାନର ଡଃ ପର୍ଶୁରାମ ମିଶ୍ର ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ)ରେ ଅଧ୍ୟାପକ ଥାଏ । କଲେଜକୁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡିଶା (ବର୍ତ୍ତମାନର ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ) ତରଫରୁ ଏକ ଚିଠି ଆସିଥିଲା । ସେ ଚିଠିରେ ଲେଖାଥିଲା ଯେ ଯେଉଁ ଅଧ୍ୟାପକମାନେ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ସଂପର୍କରେ ବିଲାତ ଯିବାକୁ ଚାହାନ୍ତି, ସେଥି ନିମନ୍ତେ ଆବେଦନ କରିବାକୁ । ଆବେଦନକାରୀଙ୍କ ଯୋଗ୍ୟତା ସଂପର୍କରେ ମଧ୍ୟ ସେଥିରେ କିଛି ଉଲ୍ଲେଖଥିଲା । ଆବେଦନକାରୀ ରେଡିଓ କାର୍ଯ୍ୟକ୍ରମ ସଂପର୍କରେ ଆବଶ୍ୟକ ଜ୍ଞାନ ହାସଲ କରିଥିବେ ଓ ପିଲାମାନଙ୍କ ପାଇଁ ଲେଖା ଲେଖି କରୁଥିବେ ।

ମୁଁ ସେହି ସମୟରେ ପିଲାମାନଙ୍କ ପାଇଁ ଲେଖାଲେଖି କରୁଥିଲି । ମୋର ଲେଖା ଓଡିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା । ଆକାଶବାଣୀର ଶିକ୍ଷା କାର୍ଯ୍ୟକ୍ରମରେ ବିଭିନ୍ନ ସମୟରେ ଯୋଗଦାନ କରିଥିବା ହେତୁ ମୁଁ ନିଜକୁ ଏଥି ନିମନ୍ତେ ଏକ ଯୋଗ୍ୟ ପ୍ରାର୍ଥୀ ବୋଲି ମନେ କଲି । ଏତଦ୍‌ବ୍ୟତୀତ ନୂଆ ଦିଲ୍ଲୀସ୍ଥ ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଦ୍ୱାରା ଦୃଶ୍ୟଶ୍ରାବ୍ୟ ଉପକରଣ ପ୍ରସ୍ତୁତି ସଂପର୍କରେ ତାଲିମ ମଧ୍ୟ ପାଇ ସାରିଥିଲି ।

ସେ ଯାହାହେଉ ଦରଖାସ୍ତଟି ଲେଖି ସାରିବାପରେ ମୁଁ ଅଧ୍ୟକ୍ଷ କ୍ଷୀରୋଦ ବିହାରୀ ଅମାନ୍ତଙ୍କୁ ତାଙ୍କର ସୁପାରିଶ ନିମନ୍ତେ ଦେଲି । ସେ କେବଳ ସୁପାରିଶ କଲେ ବୋଲି ଧାଡିଟିଏ ଲେଖି ପାରିଥାନ୍ତେ । ମାତ୍ର ସେ ସେପରି କଲେ ନାହିଁ । ସେ ମୋର ପ୍ରାର୍ଥୀତ୍ୱ ସପକ୍ଷରେ ନିଜସ୍ୱ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରି ଲେଖିଥିଲେ ।

ଅଧ୍ୟକ୍ଷ ଲେଖିଥିଲେ, "ଦରଖାସ୍ତକାରୀ ଆକାଶବାଣୀର ଶିକ୍ଷାକାର୍ଯ୍ୟକ୍ରମରେ ଏକ ନିୟମିତ ଲେଖକ । ତାଙ୍କର କେତେକ ଉପାଦେୟ ପୁସ୍ତକ ଓ ଲେଖାଅଛି । ସେହି ଉପାଦେୟ ଲେଖା ଗୁଡିକ ମଧ୍ୟରୁ ଶିଶୁ ସାହିତ୍ୟ ସଂପର୍କୀୟ ଲେଖାଗୁଡିକ ଅତି ଉଚ୍ଚ ଧରଣର ।"

ଶିଶୁ ସାହିତ୍ୟ ଓ ଶିଶୁ ସାହିତ୍ୟିକମାନଙ୍କ ପ୍ରତି ଅଧ୍ୟକ୍ଷ ମହୋଦୟଙ୍କର ଅନୁକୂଳ ମନୋଭାବ ଏହି କେତୋଟି ଧାଡିରୁ ଜଣା ପଡିଥିଲା । ତାହା ମୋ ମନରେ ଯଥେଷ୍ଟ ଆନନ୍ଦ ଦେଇଥିଲା ।

ମଣିଷ ତା'ର ଜୀବନରେ ଅନେକ କଥା ଆଶା କରିଥାଏ । ସେହି ଆଶା ଓ ଆକାଂକ୍ଷା ହିଁ ମଣିଷକୁ ଜୀବନ ପଥରେ ଆଗେଇ ଯିବାରେ ସାହାଯ୍ୟ କରିଥାଏ । ଯଦି ବିନା ଆଶାରେ ସେ ତା'ର ଜୀବନରେ କେବେ କିଛି ମୂଲ୍ୟବାନ ଜିନିଷ ପାଇଥାଏ, ତେବେ ତା'ର ଆନନ୍ଦର ସୀମା ରହି ନଥାଏ ।

ତାହାହିଁ ଘଟିଥିଲା ମୋର ଜୀବନରେ । ମୁଁ ବିଲାତରେ ଉଚ୍ଚ ଶିକ୍ଷା ପାଇଁ ଆବେଦନ କରିବା ପରେ କେବେ ବିଲାତ ଯିବି ବୋଲି ମନରେ ଆଶା ରଖି ନଥିଲି । କାରଣ ମୋ ସହିତ ଶିକ୍ଷା କାର୍ଯ୍ୟକ୍ରମରେ ବିଲାତ ଯିବା ପାଇଁ ଆଉ ଦୁଇଜଣ ଓଡିଆ ବନ୍ଧୁ ଆବେଦନ କରିଥିଲେ ।

୧୯୮୨ ମସିହା ଜୁନମାସରଏକ ଅଳସ ଅପରାହ୍ନ ।

ସେଦିନ ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷିଣ ପରିଷଦର ପ୍ରାଧ୍ୟାପକ ଡଃ ଜଗନ୍ନାଥ ମହାନ୍ତିଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ତାଙ୍କ ଠାରୁ ପ୍ରଥମେ ଜାଣିବାକୁ ପାଇଲି ଯେ ମୋ ସହିତ ଆଉ ଦୁଇଜଣ ବନ୍ଧୁ ମଧ୍ୟ ଶିକ୍ଷା ଟେଲିଭିଜନ ସଂପର୍କୀୟ ତାଲିମ ପାଇବା ନିମନ୍ତେ ବିଲାତ ଯିବା ପାଇଁ ଭାରତ

ସରକାରଙ୍କ ଦ୍ୱାରା ମନୋନୀତ ହୋଇଛନ୍ତି । ସେ ସଂପର୍କରେ ଅନ୍ୟ ଦୁଇ ବନ୍ଧୁ ଭାରତ ସରକାରଙ୍କ ଠାରୁ ମନୋନୟନ ପତ୍ର ପାଇ ସାରିଥାନ୍ତି । ମାତ୍ର ତାହା ମୋ ପାଖରେ ପହଞ୍ଚି ନ ଥିଲା । କାରଣ ଗ୍ରୀଷ୍ମ ଅବକାଶ ହେତୁ ମୁଁ ସମ୍ବଲପୁର ଛାଡି ଛତିଆ ନିକଟସ୍ଥ ଆମ ଗ୍ରାମ ରୁଦ୍ରପୁରରେ ଥିଲି ।

ଡଃ ମହାନ୍ତିଙ୍କ ଠାରୁ ଖବର ପାଇ ମୁଁ ସମ୍ବଲପୁର ଗଲି । ମୋର ମନୋନୟନ ସଂପର୍କୀୟ କାଗଜ ପତ୍ର କଲେଜରୁ ସଂଗ୍ରହ କଲି ।

ଭାରତ ସରକାର ଚାହିଁଥିବା କେତେକ ତଥ୍ୟ, ସ୍ୱାସ୍ଥ୍ୟ ସଂପର୍କୀୟ କାଗଜପତ୍ର ଭାରତ ସରକାରଙ୍କ ଶିକ୍ଷା ବିଭାଗ କାର୍ଯ୍ୟାଳୟକୁ ପଠାଇଦେଲି ।

ଇତି ମଧ୍ୟରେ ପାଞ୍ଚଛଅ ମାସ ବିତିଗଲା ।

କେବେ ବିଲାତ ଯିବାକୁ ହେବ ତାହା ମଧ୍ୟ ଆମକୁ ଠିକ୍ ଭାବେ ଜଣାଇ ଦିଆଗଲା ନାହିଁ ।

ଏହି ସମୟରେ ଶିଶୁ ସାହିତ୍ୟର ଶିକ୍ଷାଗତ ପ୍ରୟୋଗ ସଂପର୍କରେ ଗବେଷଣା କରିବା ନିମନ୍ତେ ମୋତେ ଓଡ଼ିଶା ସରକାରଙ୍କ ତରଫରୁ ଗୋଟିଏ ବର୍ଷ ଛୁଟି ମିଳିଲା । ଛୁଟି ମଧ୍ୟରେ ବିଲାତ ଯିବାକୁ ପଡିପାରେ । ପୁଣି ଛୁଟି ସମୟରେ ସରକାରଙ୍କ ତରଫରୁ ବିଲାତ ଯିବା ନିମନ୍ତେ ଅନୁମତି ମଧ୍ୟ ମିଳି ନ ପାରେ । ଏପରି ଧାରଣା ମଧ୍ୟ ମୋତେ କେତେକ ବନ୍ଧୁ ଦେଲେ ।

ଯାହାହେଉ ଏପରି ଧାରଣା ଠିକ୍ ନୁହେଁ ବୋଲି ପରେ ଜାଣିଲି ଓ ଗବେଷଣା ନିମନ୍ତେ ଛୁଟିନେଲି ।

ଡିସେମ୍ବର ମାସ ୨୨ ତାରିଖ ।

ସେଦିନ ଭାରତ ସରକାରଙ୍କ ଶିକ୍ଷା ଓ ସଂସ୍କୃତି ବିଭାଗ ତରଫରୁ ଚିଠିଟିଏ ପାଇଲି । ସେଥିରେ ଲେଖା ଥିଲା ଯେ ୧୯୮୩ ମସିହା ଜାନୁଆରୀ ମାସ ୧୭ ତାରିଖରୁ ଆମର ଶିକ୍ଷା ସଂପର୍କୀୟ ପ୍ରଶିକ୍ଷଣ ଆରମ୍ଭ ହେବ । ଏହି ପ୍ରଶିକ୍ଷଣ କାର୍ଲଲାଇଲସ୍ଥିତ ଏଦନ୍‌ଭିଜନ ଷ୍ଟୁଡିଓରେ ନେବାକୁ ପଡିବ ।

ଜାନୁଆରୀ ମାସରେ ବିଲାତ ଯିବା କଥା ଜାଣି ମୁଁ ହଠାତ୍ ହତୋତ୍ସାହ୍ ହୋଇ ପଡିଲି । କାରଣ ସେ ସମୟ ମୋ ପାଇଁ ଅନୁକୂଳ ନଥିଲା । ମୋର ଚତୁର୍ଥ ପୁତ୍ର ସନ୍ତାନ କାନ୍ତି ପ୍ରକାଶ ଆଠଦିନ ତଳେ ହିଁ ଜନ୍ମ ନେଇଥିଲା । ନବାଗତ ସନ୍ତାନଟିକୁ କିପରି ସମ୍ବଲପୁରରୁ ପ୍ରାୟ ୩୨୧ କିଲୋ ମିଟର ଦୂର ଆମ ଗାଁକୁ ନେବି; ତାହାହିଁ ମୋର ସମସ୍ୟା ଥିଲା ।

ନିଜର ପ୍ରତିକୂଳ ପରିସ୍ଥିତି ସମୟରେ ଘର ଛାଡିବାର ଆହ୍ୱାନ ମୋ ମନକୁ ଅଧିକ ଚଳଚଞ୍ଚଳ କଲା । ମୁଁ ଖୁବ୍ ବ୍ୟସ୍ତ ହୋଇ ପଡିଲି ।

• ସେହି ସମୟରେ ମୁଁ ମୋ ମନକୁ ଆପେ ଆପେ ସାନ୍ତ୍ୱନା ଦେବାକୁ ଲାଗିଲି । ଗୁଣୀ ଲୋକମାନେ ବ୍ୟସ୍ତ ହେବା ପରିବର୍ତ୍ତେ ଧୈର୍ଯ୍ୟର ସହିତ ପରିସ୍ଥିତିର ମୁକାବିଲା କରନ୍ତି । ସେ ସବୁର ଦୃଷ୍ଟାନ୍ତ ମୋ ଆଖି ଆଗରେ ଗୋଟିଏ ପରେ ଗୋଟିଏ ଆସି ନାଚି ଉଠିଲା । ପରିଶେଷରେ ସପରିବାର ସମ୍ବଲପୁର ଛାଡି ଆମ ଗ୍ରାମ ରୁଦ୍ରପୁର ଅଭିମୁଖେ ଆସିଲି ।



# ଯାତ୍ରା ନିମନ୍ତେ ଆବଶ୍ୟକ ଥିବା କାଗଜପତ୍ର

ସମ୍ବଲପୁର ସିନା ଛାଡି ଆସିଲି, ମାତ୍ର ବିଲାତ ଯିବା ସଂପର୍କୀୟ ଆବଶ୍ୟକ କାଗଜପତ୍ର ଯୋଗାଡ କରି ପାରି ନଥିଲି । ସେ ସବୁ ଭୁବନେଶ୍ୱରରେ କରିବାର ଥିଲା ।

ସେତେବେଳକୁ ଜାନୁୟାରୀ ମାସ ୩ ତାରିଖ ହୋଇଗଲାଣି । ଆଉ ମାତ୍ର ସାତ ଆଠ ଦିନ ମଧ୍ୟରେ ସମସ୍ତ କାଗଜପତ୍ର କାମ କରିବାକୁ ପଡିବ । ସେହିସବୁ କାଗଜପତ୍ର ମଧ୍ୟରୁ ସବୁଠାରୁ ଦରକାରୀ କାଗଜପତ୍ର ମଧ୍ୟରେ ଥିଲା ପାସପୋର୍ଟ । ପାସପୋର୍ଟ ନଥିଲେ ଜଣେ ନିଜଦେଶ ଛାଡି ବିଦେଶ ଯାଇ ପାରିବେ ନାହିଁ ।

ପାସପୋର୍ଟ ନିମନ୍ତେ ଶିକ୍ଷା ବିଭାଗ ତରଫରୁ ଓଡିଶା ସରକାରଙ୍କ ଘରୋଇ ବିଭାଗ (Home Departmant)କୁ ଲେଖାଯିବ । ଘରୋଇ ବିଭାଗର ଚିଠି ଭୁବନେଶ୍ୱର ସ୍ଥିତ ଭାରତ ସରକାରଙ୍କ ପାସପୋର୍ଟ ଅଫିସକୁ ଗଲେ ପାସପୋର୍ଟ ମିଳିବ ।

ଜାନୁୟାରୀ ମାସ ୪ ତାରିଖରେ ଶିକ୍ଷା ବିଭାଗ ମୋ ସପକ୍ଷରେ ପାସପୋର୍ଟ ଦେବା ନିମନ୍ତେ ଘରୋଇ ବିଭାଗକୁ ମୋ ଆବେଦନ ପତ୍ରଟିକୁ ପଠାଇଲେ । ହାତେ ହାତେ ଶିକ୍ଷା ବିଭାଗର ଚିଠିଟି ନେଇ ଘରୋଇ ବିଭାଗରେ ଦେଲି । ତା'ପର ଦିନ ଘରୋଇ ବିଭାଗରେ ପହଞ୍ଚି ଶୁଣିଲି ଯେ ମୋର ପାସପୋର୍ଟ ସଂପର୍କୀୟ ଫାଇଲିଟିକୁ ଘରୋଇ ବିଭାଗ ସଚିବଙ୍କ ପାଖକୁ ପଠାଇବାକୁ ଥିବା ଅନୁବିଭାଗ ସଚିବ (Under Secretary), ଉପସଚିବ (Deputy Secretary) ନାହାଁନ୍ତି । ଯାହା ଫଳରେ ଘରୋଇ ବିଭାଗରୁ ପାସପୋର୍ଟ ଅଫିସକୁ ମୋର ଚିଠିଟି ଯାଇପାରିବ ନାହିଁ ।

ହାତରେ ଭାରତ ଛାଡିବାକୁ ଆଉ ମାତ୍ର ଛଅ ଦିନ ରହିଲା । ସେହି ଛଅଦିନ ମଧ୍ୟରେ ବାହାରେ ଦୁଇଦିନ ରହି ଆମକୁ ବ୍ରିଟିଶ କାଉନସିଲ ଅଫିସରୁ କେତେକ କାଗଜ ପତ୍ର ଯୋଗାଡ କରିବାକୁ ପଡିବ ।

ମୋର ବ୍ୟସ୍ତତା ଦେଖି ଘରୋଇ ବିଭାଗର ସେକ୍‌ସନ ଅଫିସର ମୋତେ ସିଧାସଳଖ ଯାଇ ଘରୋଇ ବିଭାଗର ସଚିବଙ୍କୁ ସାକ୍ଷାତ କରି କହିବାକୁ କହିଲେ । ସେତେବେଳେ ଘରୋଇ ବିଭାଗର ସଚିବ ଥାଆନ୍ତି ଶ୍ରୀଯୁକ୍ତ ଶଚୀନାରାୟଣ ଦାସ, ଆଇ.ଏ.ଏସ୍. ।

ମୁଁ ତାଙ୍କ କଠୋରୀ ନିକଟରେ ପହଞ୍ଚିଲି । ପଦଧ୍ୱନି ଶୁଣି ପାରିଲେ । ସେ କୋଠରୀ ଭିତରୁ ମୋତେ ଲକ୍ଷ୍ୟକରି କହିଲେ, କିଏ ଆସ ।"

ମୁଁ ତାଙ୍କ ପାଖକୁ ଯାଇ ସମସ୍ତ କଥା କହିଲି । ସେ ମୋତେ ବସିବାକୁ କହିଲେ । ମୋର ବିଲାତ ଯିବା କାଗଜ ପତ୍ର ଦେଖିଲେ । ସେଥିରୁ କାଲଲାଇଲ ଯିବା କଥା ଜାଣି ସେ କହିଲେ, "ଓଃ ତୁମେ କାର୍ଲଲାଇଲ ଯାଉଛ । ଏ ଜାଗାଟି ଲଣ୍ଡନ ଠାରୁ ଅଧିକ ଥଣ୍ଡା ।"

ତା'ପରେ ସେ ସେକ୍‌ସନ ଅଫିସରଙ୍କୁ ଡକାଇ ମୋ ଫାଇଲ ପଠାଇ ଦେବାକୁ କହିଲେ । ଅଳ୍ପ ସମୟ ମଧ୍ୟରେ ମୋ ଫାଇଲ ଆସିଗଲା । ଘରୋଇ ବିଭାଗରୁ ପାସପୋର୍ଟ ଅଫିସକୁ ଯିବା ଚିଠିଟି ଟାଇପ ହେବାକୁ ଆଉ ବେଶୀ ସମୟ ଲାଗିଲା ନାହିଁ । ମୋତେ ଟାଇପ୍ ସେକସନର ଜଣେ ଭଦ୍ରବ୍ୟକ୍ତି ପଚାରିଲେ, "ଘରୋଇ ବିଭାଗର ସଚିବ ଆପଣଙ୍କ ଚିହ୍ନା ପରିଚୟ କି ?

ମୁଁ ମନା କଲି ।

ସେ କହିଲେ, "ସେ କଥା ବୁଝୁଛି କିଏ ? ସାଧାରଣତଃ ପାସପୋର୍ଟ ଅଫିସକୁ ପଠାଯାଇଥିବା ଚିଠିରେ ସଚିବ ଦସ୍ତଖତ କରନ୍ତି ନାହିଁ । ତାଙ୍କର ଅଧସ୍ତନ ଅଫିସର କରିଥାନ୍ତି । ମାତ୍ର ଆପଣଙ୍କ ଚିଠିର ଡ୍ରାଫ୍‌ଟରେ ସଚିବଙ୍କ ଦସ୍ତଖତ ଦେଖି ଆମର କର୍ମଚାରୀମାନେ ଆପଣଙ୍କ କାମକୁ ଆଗ କରି ଦେଲେ ।

କେତେବେଳେ କେମିତି କୌଣସି କାମ ସାମାନ୍ୟ ଜଣା ଯାଇଥାଏ । ପୁଣି ସେହି ସାମାନ୍ୟ କାମ ମଧ୍ୟ ଏକ ବିରାଟ ସମସ୍ୟା ରୂପେ ଦେଖା ଦେଇଥାଏ । ମୋ ପାଇଁ ସେଦିନର ବିରାଟ ସମସ୍ୟା ହୋଇ ଦେଖା ଦେଉଥିବା କାମଟି ଯେ ଶ୍ରୀଯୁକ୍ତ ଦାସଙ୍କ ହସ୍ତକ୍ଷେପ ଫଳରେ ଏତେ ସରଳ ହୋଇଯିବ; ତାହା କେବେ ମୁଁ କଳ୍ପନାରେ ସୁଦ୍ଧା ଭାବିନଥିଲି ।

ସେଦିନ ସେ ଯଦି ନିଜ ଆଡୁ ଅଯାଚିତ ଭାବେ ସାହାଯ୍ୟ କରି ନଥାନ୍ତେ; ତେବେ ପାସପୋର୍ଟ ଅଭାବରେ ମୋର ବିଲାତ ଯିବା ଆଶା ପାଣି ଫୋଟକା ପରି ମିଳେଇ ଯାଇଥାନ୍ତା ।



# ଘରୁ କଲିକତା ଅଭିମୁଖେ

ଜାନୁୟାରୀ ମାସ ୯ ତାରିଖ ।

ଘରଛାଡି ବହୁ ଦୂରକୁ ଚାଲିଯିବାକୁ ପଡିବ ଭାବି ମନଟା ମୋର କେମିତି କେମିତି ଲାଗୁଥାଏ ।

ସେହି ଅପରାହ୍ନରେ ଘରୁ ଗୁରୁଜନ ମାନଙ୍କ ଠାରୁ ମୁଁ ବିଲାତ ଅଭିମୁଖେ ବିଦାୟ ନେଲି । ବାପାଙ୍କ ଠାରୁ ବିଦାୟ ନେଲାବେଳେ ମୋ ଆଖିରେ ଲୁହ ଭରି ଆସିଲା ।ମୁଁ ମୋର କୋହକୁ ଚାପି ରଖି ପାରିଲି ନାହିଁ ।

ସେତେବେଳେ ସେ ବାର୍ଦ୍ଧକ୍ୟର ଚରମ ସୀମାରେ ଥିଲେ । ମୋର ଶିକ୍ଷା ଦୀକ୍ଷା ଓ ମୌଳିକ ଚେତନାର ସେ ଥିଲେ ପ୍ରଜ୍ଞା ପୁରୁଷ ।

ପ୍ରାଥମିକ ଶିକ୍ଷା ମୁଁ ତାଙ୍କଠାରୁ ହିଁ ପାଇଥିଲି । ତାଙ୍କ ଶିକ୍ଷକ ଜୀବନରେ ସେ ଟାଙ୍ଗୀ ଚୌଦ୍ୱାର ଅଞ୍ଚଳର ଜଣେ ପ୍ରବୀଣ ଶିକ୍ଷକରୂପେ ଜଣା ଶୁଣାଥିଲେ । ଜଳୌକା ଆନନ୍ଦଧାମର ବାବା ପରମହଂସ ବୈକୁଣ୍ଠ ନାଥ ବ୍ରହ୍ମଚାରୀ ତାଙ୍କୁ ଶ୍ରଦ୍ଧାରେ ଗୁରୁଜୀ ବୋଲି ଡାକୁଥିଲେ ।

ଆମ ଗାଁ ରୁଦ୍ରପୁର ଠାରୁ ଛତିଆ ହେଉଛି ପ୍ରାୟ ପାଞ୍ଚ କିଲୋମିଟର । ଏହି ପାଞ୍ଚ କିଲୋମିଟର ଚାଲି ଚାଲି କିମ୍ବା ରିକ୍ସାରେ ଆସିଲେ ଛତିଆ ଠାରୁ ଭୁବନେଶ୍ୱର ଆସିବାକୁ ବସ ମିଳେ ।

ସେ ଦିନ ଭୁବନେଶ୍ୱର ଠାରୁ ରାତି ଏଗାରଟା ବେଳେ ଆମର କୋଲକାତା ଅଭିମୁଖେ ଯାତ୍ରା କରିବାର ଥିଲା । ଛତିଆ ପର୍ଯ୍ୟନ୍ତ ମୋତେ ବଳେଇ ଦେବା ପାଇଁ ମୋ ବଡଭାଇ, ସାତ ବର୍ଷର ପୁଅ ଜ୍ୟୋତି ପ୍ରକାଶ ଓ ତା'ର ସାନଭାଇ ଦୀପ୍ତି ପ୍ରକାଶ ଆସିଥିଲେ ।

ବସରେ ଛଡ଼ିଲା ପରେ ସେମାନଙ୍କ ମୁହଁ ଉପରେ ଟିକିଏ ଆଖି ବୁଲେଇ ଆଣିଲି । ମୋର ବିଲାତ ଯାତ୍ରା କଥା ଶୁଣି ସେମାନେ ସବୁବେଳେ ପଚାରୁଥିଲେ ମୁଁ କେବେ ଫେରିବି । ତିନିମାସ ରହିବି ବୋଲି ମୁଁ ସେମାନଙ୍କୁ ବାରମ୍ବାର କହୁଥିଲି । ମାତ୍ର ସେମାନେ ଶିଶୁ ସୁଲଭ ବିଚାରରେ ତିନି ମାସକୁ ତିନିଦିନ ବୋଲି ଭାବୁଥିଲେ ।

ଆଉ ବିଲାତର ଦୂରତା କଥା କହିଲେ ସେମାନେ ଅତି କମ୍‌ରେ ଗାଁ ସେପାଖରେ ଦେଖୁଥିବା କୌଣସି ସ୍ଥାନର ଦୂରତା ବୋଲି ଭାବୁଥିଲେ କିମ୍ବା ବେଶୀରେ ସେମାନେ ମୋ କର୍ମସ୍ଥଳୀ ସମ୍ବଲପୁରର ଦୂରତା ବିଲାତର ଦୂରତା ବୋଲି ଆକଳନ କରୁଥିଲେ ।

ଛତିଆକୁ ପଛରେ ପକାଇ ମୁଁ ଆସି ଭୁବନେଶ୍ୱରରେ ପହଞ୍ଚିଲି ।

ସେଦିନ ରାତ୍ରିଭୋଜନ ପାଇଁ ମୋତେ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ପ୍ରାଧ୍ୟାପକ -ତଥା ଓଡ଼ିଶାର ବିଶିଷ୍ଟ ଶିଶୁ ସାହିତ୍ୟିକ ଡଃ ଜଗନ୍ନାଥ ମହାନ୍ତି ନିମନ୍ତ୍ରଣ କରିଥିଲେ । ଡଃ ମହାନ୍ତିଙ୍କ ସହିତ ମୋର ୧୯୮୨ ମସିହାରେ ବ୍ରହ୍ମପୁର ଠାରେ ଓଡ଼ିଶା ସରକାରଙ୍କ ଶିଶୁ ସାହିତ୍ୟ ସମିତି ଆନୁକୂଲ୍ୟରେ ଅନୁଷ୍ଠିତ ହେଉଥିବା ଶିଶୁ ସାହିତ୍ୟ ଆଲୋଚନା ଚକ୍ରରେ ଚିହ୍ନା ପରିଚୟ ହୋଇଥିଲା । ମାତ୍ର ମୁଁ ଡକ୍ଟର ମହାନ୍ତିଙ୍କ ଶିଶୁ ସାହିତ୍ୟ ସହିତ ମାଧ୍ୟମିକ ଶିକ୍ଷା ସ୍ତରରୁ ପରିଚିତ ଥିଲି । ସେ ସମୟରେ ତାଙ୍କର ବହୁଲେଖା ଓଡ଼ିଶାର ଶିଶୁ ପତ୍ରିକା ଗୁଡିକରେ ପ୍ରକାଶ ଲାଭ କରୁଥିଲା ।

ବିଶେଷତଃ ଜାତୀୟ କବି ବୀର କିଶୋର ଦାସଙ୍କ ସଂପାଦିତ 'ସମବାୟ' ପତ୍ରିକାଟିରେ ଡକ୍ଟର ମହାନ୍ତିଙ୍କର ପ୍ରକାଶିତ ବିଭିନ୍ନ ଲେଖା ପ୍ରତି ମୁଁ କଲେଜ ଜୀବନରେ ଆକୃଷ୍ଟ ହୋଇଥିଲି । ସେତେବେଳେ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ଯେ ଓଡ଼ିଶାର ଏହି ଲବ୍‌ଧ ପ୍ରତିଷ୍ଠିତ ଶିକ୍ଷାବିତ୍ ଓ ଶିଶୁ ସାହିତ୍ୟିକଙ୍କ ସହିତ ମୋର ସଂପର୍କ ଘନିଷ୍ଠ ହେବ । ଶିଶୁ ସାହିତ୍ୟରେ ଡକ୍ଟର ମହାନ୍ତିଙ୍କ ଅନବଦ୍ୟ ଅବଦାନ ଯୋଗୁଁ ମୁଁ ତାଙ୍କ ନିର୍ଦ୍ଦେଶନାରେ ମୋର ଶିଶୁ ସାହିତ୍ୟ ସଂପର୍କୀୟ ଗବେଷଣାତ୍ମକ ନିବନ୍ଧ ପ୍ରସ୍ତୁତ କରିବା ନିମନ୍ତେ ମନସ୍ଥ କରିଥିଲି ।

ସେଥିପାଇଁ ଡକ୍ଟର ମହାନ୍ତିଙ୍କୁ ଅନୁରୋଧ ଜଣାଇ ଏକ ଚିଠି ଲେଖିବା ନିମନ୍ତେ ମୁଁ ସମ୍ବଲପୁର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟର ବରିଷ୍ଠ ଅଧ୍ୟାପକ ଡକ୍ଟର କାଳିଚରଣ ସାହୁଙ୍କୁ ଲେଖିବାକୁ କହିଥିଲି । ଡକ୍ଟର ସାହୁଙ୍କ ଚିଠି ପାଇ ଡକ୍ଟର ମହାନ୍ତି ତାଙ୍କର ସ୍ୱୀକୃତି ପ୍ରଦାନ କରିଥିଲେ ।

ସେଦିନ ରାତ୍ରି ଭୋଜନ ସମୟରେ ଡକ୍ଟର ମହାନ୍ତି ମୋତେ ବିଲାତରୁ ଶିଶୁ ସାହିତ୍ୟ ଗବେଷଣା ସଂପର୍କୀୟ ବିଭିନ୍ନ ତଥ୍ୟ ସଂଗ୍ରହ ହେବା ନିମନ୍ତେ ପରାମର୍ଶ ଦେଇଥିଲେ ।

ଡକ୍ଟର ମହାନ୍ତିଙ୍କ ସହିତ ମୋର ଆଲୋଚନା ରାତି ଦଶଟା ପର୍ଯ୍ୟନ୍ତ ହୋଇଥିଲା । ତା'ପରେ ତାଙ୍କର ମାଷ୍ଟର କାଣ୍ଟିନ୍‌ସ୍ଥିତ ସରକାରୀ ବାସ ଭବନରୁ ମୁଁ କଲିକତା ଯିବା ନିମନ୍ତେ ଷ୍ଟେସନ ଅଭିମୁଖେ ଆସିଥିଲି ।

ଭୁବନେଶ୍ୱର ରେଲ୍‌ୱେ ଷ୍ଟେସନରେ ମୋର ବଡଭାଇ ମୋତେ ଅପେକ୍ଷା କରି ରହିଥିଲେ । ରାତି ଏଗାରଟା ପାଖପାଖି କଲିକତା ଅଭିମୁଖେ ପୁରୀ-ହାଓ୍ୱାଡ଼ା ଏକ୍ସପ୍ରେସ ଆସି ଭୁବନେଶ୍ୱରରେ ପହଞ୍ଚିଥିଲା ।

ମୁଁ କଲିକତା ଅଭିମୁଖେ ଗାଡି ଚଢିଲି । ତା'ପର ଦିନ ସକାଳେ କଲିକତାରେ ଗାଡି ପହଞ୍ଚିଲା । ଆମେ କଲିକତାରେ ଥିବା ଓଡ଼ିଶା ସରକାରଙ୍କ 'ଉତ୍କଳ ଭବନ'ରେ ରହିବା ନିମନ୍ତେ ଗଲୁ ।



# ଉତ୍କଳ ଭବନରେ ଦୁଇଟି ଦିନ

କୋଲ୍‌କାତା ସ୍ଥିତ 'ଉତ୍କଳ ଭବନ' ଓଡ଼ିଶା ସରକାରଙ୍କ ଦ୍ୱାରା ପରିଚାଳିତ । କର୍ତ୍ତବ୍ୟରତ ସରକାରୀ କର୍ମଚାରୀ ଓ ଓଡ଼ିଶାରୁ ଯାଉଥିବା ବ୍ୟକ୍ତି ବିଶେଷଙ୍କ ରହିବା ନିମନ୍ତେ ଏହି ଭବନଟି ଉଦ୍ଦିଷ୍ଟ । ଅବଶ୍ୟ ଏଥିପାଇଁ ଓଡ଼ିଶା ସରକାରଙ୍କ ଘରୋଇ ବିଭାଗ (Home Department) ଠାରୁ ଆଗରୁ ଅନୁମତି ନେବାକୁ ପଡିଥାଏ । ଘରୋଇ ବିଭାଗର ଅନୁମତି କ୍ରମେ ଆମେ ବିଲାତ ଅଭିମୁଖେ ଯିବା ପର୍ଯ୍ୟନ୍ତ ସମୟ ଏଠାରେ ଅତିବାହିତ କରିଥିଲୁ ।

ସେଦିନ ସକାଳୁ ନିତ୍ୟକର୍ମ ସାରି ଆମେ କୋଲ୍‌କାତାସ୍ଥିତ ୫, ସେକ୍ସପିୟର ସରଣୀରେ ଅବସ୍ଥିତ ବ୍ରିଟିଶ କାଉନସିଲ୍ ଅଫିସକୁ ଗଲୁ । ସେଠାରେ ଆମ ପ୍ରୋଗ୍ରାମ୍ ଦାୟିତ୍ୱରେ ଥିବା ଭଦ୍ରମହିଳା ଶ୍ରୀମତୀ ଦତ୍ତ ଆମକୁ ଅପେକ୍ଷା କରିଥିଲେ । ସେ ଆମଠାରୁ ଆମ ସ୍ୱାସ୍ଥ୍ୟ ସଂପର୍କୀୟ କେତେକ କାଗଜ ପତ୍ର ନେଲେ ଏବଂ କୋଲକାତାସ୍ଥିତ ଥୋମାସକୁକ୍ ଟ୍ରାଭେଲ୍ ଏଜେଣ୍ଟଙ୍କ ଅଫିସରୁ ବିଲାତ ଅଭିମୁଖେ ଆମର ଆନ୍ତର୍ଜାତିକ୍ ଉଡାଜାହଜ ଟିକେଟ୍ ଆଣିବା ପାଇଁ କହିଲେ ।

ଆମେ ଯାଇ ଥୋମାସ୍‌କୁକ୍ ଟ୍ରାଭେଲ୍ ଏଜଣ୍ଟ ଅଫିସରେ ପହଞ୍ଚିଲୁ । ସେଠାରେ ଟିକେଟ୍ ଆଣିବା ପାଇଁ ଆମକୁ ଟ୍ରାଭେଲ୍ ଏଜେଣ୍ଟ ଜଣକ ଇମ୍ମିଗ୍ରେସନ ପ୍ରମାଣ ପତ୍ର (Immigration Certificate) (ଦେଶଛାଡି ଯିବାର ପ୍ରମାଣପତ୍ର) ଆଣିବାକୁ କହିଲେ । ସାଧାରଣତଃ ନିଜ ଦେଶ ଛାଡି ଅନ୍ୟ ଦେଶକୁ ଯିବାକୁ ହେଲେ ଏପରି ପ୍ରମାଣ ପତ୍ରର ଆବଶ୍ୟକତା ହୋଇଥାଏ । ଆମେ ଇମ୍ମିଗ୍ରେସନ ସଂପର୍କୀୟ ପ୍ରମାଣପତ୍ର ଆଣିନାହୁଁ ବୋଲି କହିଲୁ ।

ଆମ କଥା ଶୁଣି ସେ କହିଲେ, "ତେବେ ଆପଣମାନେ ଦେଶ ଛାଡି ବାହାରକୁ ଯାଇ ପାରିବେ ନାହିଁ ।"

ସେ କର୍ମଚାରୀଙ୍କ ଏପରି କଥା ଶୁଣି ଆମକୁ ଆଶ୍ଚର୍ଯ୍ୟ ଲାଗିଲା । ଆମ ପାଖକୁ ବ୍ରିଟିଶ୍ କାଉନସିଲ ତରଫରୁ ଯେଉଁସବୁ ଚିଠିପତ୍ର ଆସିଥିଲା ସେଥିରେ ନିର୍ଦ୍ଦିଷ୍ଟଭାବେ ଏକ୍ସ-ରେ ରିପୋର୍ଟକୁ ଛାଡିଦେଲେ ଆଉ କୌଣସି ପ୍ରମାଣ ପତ୍ରର ଆବଶ୍ୟକତା ସଂପର୍କରେ ଉଲ୍ଲେଖ ନଥିଲା । କେବଳ ଲେଖାଥିଲା ଯେ ଆସିବା ପୂର୍ବରୁ ସମସ୍ତ ପ୍ରକାରର ପ୍ରାକ୍ ପ୍ରସ୍ଥାନ ବିଧିବିଧାନ ଶେଷକରି ଆସିବା ପାଇଁ । ସେ ସଂପର୍କରେ ଆମେ ଯାହାକିଛି ଆମର ପୂର୍ବରୁ ବିଲାତ୍ ଯାଇଥିବା ବ୍ୟକ୍ତି ବିଶେଷଙ୍କ ଠାରୁ ଜାଣିଥିଲୁ । ମାତ୍ର ସେମାନେ କେହି ଆମକୁ ଇମ୍ମିଗ୍ରେସନ ସାର୍ଟିଫିକେଟ୍ ସଂପର୍କରେ କିଛି କହି ନଥିଲେ ।

ଏହିପରି ବିଲାତ ଯାତ୍ରା ନିମନ୍ତେ ଏକ ଅସ୍ୱଭାବିକ୍ ସ୍ଥିତି ଲାଗି ରହିଥିବା ବେଳେ ସେହି କାର୍ଯ୍ୟାଳୟର ଜଣେ ଭଦ୍ରବ୍ୟକ୍ତି ଆମ ପାଖକୁ ଆସିଲେ । ସେ ଆମର ସମସ୍ତ କାଗଜପତ୍ରକୁ ଟିକିନିକି ତନଖି ତନଖି ଦେଖିଲେ । କିଛି ସମୟପରେ ଏଜେଣ୍ଟ ଜଣଙ୍କୁ କହିଲେ, "ସେମାନେ ଭାରତ ସରକାରଙ୍କ ମନୋନୀତ ପ୍ରାର୍ଥୀରୂପେ ବ୍ରିଟିଶ୍ କାଉନସିଲ୍‌ର ବୃତ୍ତି ପାଇ ଉଚ୍ଚ ଶିକ୍ଷାପାଇଁ ବିଲାତ ଯାତ୍ରା କରୁଛନ୍ତି । ନିୟମ ଅନୁସାରେ ସେମାନଙ୍କ ପ୍ରତି "ଇମ୍ମିଗ୍ରେସନ ପ୍ରମାଣ ପତ୍ର" ଦାଖଲ କରିବାର ଆବଶ୍ୟକତା ନାହିଁ ।"

ଅଳ୍ପ ସମୟ ପାଇଁ ବିଲାତ୍ ଯାତ୍ରାର ପଥ ଅବରୋଧ କରିଥିବା ଏହି ଝଡଟି ଯେ ଏତେ ଶୀଘ୍ର ଥମି ଯିବ, ତାହା ମୁଁ ବିଶ୍ୱାସ କରି ନଥିଲି ।

ଆମକୁ ସେ ଭଦ୍ରବ୍ୟକ୍ତିଙ୍କ କଥାଶୁଣି ଏଜେଣ୍ଟ ଜଣକ ସଙ୍ଗେ ସଙ୍ଗେ ବିଲାତ ଯିବା ନିମନ୍ତେ ଉଡାଜାହାଜ ଟିକେଟ୍ ଦେଇ ଦେଇଥିଲେ ।



# ନବବର୍ଷର ନୂଆ ଉପହାର

ନବବର୍ଷ । ପୁଣି ନୂଆ ଉପହାର । ନୂଆ ବର୍ଷରେ ନୂଆ ଉପହାରଟିଏ ମିଳିଗଲେ ମନ କେତେ ଖୁସି ହୋଇ ନଯାଏ ସତେ !

ନୂଆବର୍ଷର ପ୍ରାରମ୍ଭରେ ବିଲାତ୍ ଯାତ୍ରା ମୋ ପାଇଁ ଥିଲା ଭାରତ ସରକାରଙ୍କର ଏକ ନୂଆବର୍ଷର ଉପହାର ।

ଉତ୍କଳ ଭବନର ଏକ କୋଠରୀର ନରମ ଶଯ୍ୟାରେ ଅଳସ ଭାଙ୍ଗୁ ଭାଙ୍ଗୁ ମୁଁ ଏହି ଉପହାର ସଂପର୍କରେ ଅନେକ କଥା ଭାବି ଚାଲିଥିଲି । ସେଦିନର ସେହି ବହୁ ଆକାଂକ୍ଷିତ ବିଲାତ ଯାତ୍ରା ଯେ ଆଉ ଅଳ୍ପ କେତେ ଘଣ୍ଟା ବାକି ରହିଲା ସେ କଥା ଭାବିଲା ବେଳକୁ ଦେହ ରୋମାଞ୍ଚିତ ହୋଇ ଆସୁଥାଏ । ଉଡାଜାହାଜ ଚଢାର ଅନୁଭୂତି ପୁଣି ହେବ ଜୀବନର ପ୍ରଥମ ଅନୁଭୂତି ।

ନୂଆଦେଶରେ କେତେ ନୂଆ ଲୋକଙ୍କ ସହିତ ମିଶିବାକୁ ପଡିବ । କେତେ କଥା ଜାଣିବାକୁ ପଡିବ । ଏମିତି ଏଣୁତେଣୁ ଅନେକ କଥା ଭାବୁ ଭାବୁ ମୁଁ ରହୁଥିବା କୋଠରୀର କଲିଙ୍ଗ୍‌ବେଲଟିକୁ କେହି ଜଣେ ଟିପିଲେ ।

ମୋର ଭାବନା ଭାଙ୍ଗିଗଲା । ମୁଁ କବାଟ ଖୋଲିଲି । ଦେଖିଲି ମୋ ପାଇଁ ଚା’ କପଟିଏ ଆସିଛି । ଖୁସି ମନରେ ଚା’ କପଟିକୁ ଶେଷକଲି । ନିତ୍ୟକର୍ମ ସାରି କୋଲ୍‌କାତାର ଏକ ବଜାରକୁ ଗଲି ।

ବିଲାତରେ ପହଞ୍ଚି ପହଞ୍ଚି ଆବଶ୍ୟକ ଥିବା କେତୋଟି ଜିନିଷପତ୍ର କିଣାଗଲା । ଅତ୍ୟଧିକ ଥଣ୍ଡାରୁ ଶରୀରକୁ ରକ୍ଷା କରିବା ନିମନ୍ତେ ଅଣ୍ଡର ଗାର୍ମେଣ୍ଟ କିଣାଗଲା । ଏତଦ୍ ବ୍ୟତୀତ ତିନି ଚାରୋଟି ନେକ୍‌ଟାଇ ମଧ୍ୟ କିଣାଗଲା । ଆମ ପରିବେଶରେ ନେକ୍‌ଟାଇ ପିନ୍ଧିବାକୁ ମୋତେ ଆଦୌ ଭଲ ଲାଗୁ ନଥିଲା । ମାତ୍ର ତାଙ୍କ

ପରିବେଶରେ କୋଟ୍ ସହିତ ଟାଇ ପିନ୍ଧିବା ଏକ ସାଧାରଣ ଆବଶ୍ୟକତା ଓ ସୌଜନ୍ୟ ମଧ୍ୟ ।

ସେଦିନ ରାତି ନଅଟାରେ ବିଲାତ ଅଭିମୁଖେ ବ୍ରିଟିଶ ଏୟାରୱେଜ୍‌ର ଏକ ବିମାନରେ କୋଲକାତାର ଆନ୍ତର୍ଜାତିକ ବିମାନଘାଟିରୁ ଯିବାର ଥିଲା । ତେଣୁ ଆମେ ଶୀଘ୍ର ଶୀଘ୍ର ଜିନିଷପତ୍ର କିଣାକିଣି କରି ଉତ୍କଳ ଭବନକୁ ଫେରି ଆସିଲୁ ।

ଆବଶ୍ୟକୀୟ ପ୍ରସ୍ତୁତି ପର୍ବସାରି ଦମ୍‌ଦମ ବିମାନଘାଟି ଅଭିମୁଖେ ବାହାରି ପଡିଲୁ ।

ଆମର ପ୍ରିୟ ଉତ୍କଳଭବନ ପଛରେ ପଡି ରହିଲା ।



# ଆନ୍ତର୍ଜାତିକ ବିମାନଘାଟି ଦମଦମ୍

ଦମଦମ୍ ବିମାନଘାଟିରେ ଆମ ଟ୍ୟାକ୍ସି ରାତି ଆଠଟାବେଳେ ପହଞ୍ଚିଲା ।

କୋଲକାତା ସ୍ଥିତ ଦମଦମ ବିମାନଘାଟି ହେଉଛି ଏକ ଆନ୍ତର୍ଜାତିକ ବିମାନଘାଟି ।ଏଠାରୁ ପୃଥିବୀର ବିଭିନ୍ନ ଦେଶକୁ ଆକାଶ ପଥରେ ଯାତ୍ରା କରିବାର ସୁବିଧା ସୁଯୋଗ ଅଛି । ଏବେ ଏହି ବିମାନ ଘାଟିଟି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆନ୍ତର୍ଜାତିକ ବିମାନ ଘାଟି ରୂପେ ପରିଚିତ ।

ସାଧାରଣତଃ ବିମାନଘାଟିକୁ ଦୁଇ ପ୍ରକାର ବିଭକ୍ତ କରାଯାଇଥାଏ । ଗୋଟିଏ ହେଲା ଘରୋଇ (Domestic) ଓ ଅନ୍ୟଟି ହେଲା ଆନ୍ତର୍ଜାତିକ (International) । ଘରୋଇ ବିମାନଘାଟିରେ ଆମ ଦେଶର ବିଭିନ୍ନ ସ୍ଥାନକୁ ଯିବାର ସୁବିଧା ସୁଯୋଗ ଅଛି । ମାତ୍ର ଆନ୍ତର୍ଜାତିକ ବିମାନଘାଟିରେ ବିଦେଶକୁ ଯାଉଥିବା ଓ ବିଦେଶରୁ ଆସୁଥିବା ବିମାନ ଗୁଡିକ ଅବତରଣ କରିଥାଏ । ଅନେକ ସମୟରେ ଦିଲ୍ଲୀ, କୋଲ୍‌କାତା, ମୁମ୍ୱେଇ ଆଦି ବିମାନଘାଟିକୁ ଗଲାବେଳେ ଯଦି ଟ୍ୟାକସି ଚାଳକଙ୍କୁ ଘରୋଇ କିମ୍ୱା ଆନ୍ତର୍ଜାତିକ ଯାତ୍ରାର ସୂଚନା ନ ଦିଆଯାଏ, ତେବେ ଚାଳକ ଘରୋଇ ସ୍ଥାନରେ ଆନ୍ତର୍ଜାତିକ କିମ୍ୱା ଆନ୍ତର୍ଜାତିକ ସ୍ଥାନରେ ଘରୋଇ ଟର୍ମିନାଲ୍‌ରେ ନେଇ ଛାଡିଥାଏ । ଏହି ଦୁଇ ଟର୍ମିନାଲ ଦୂରତ୍ୱ ପାଖାପାଖି ନଥିବା ହେତୁ ଏ ସଂପର୍କରେ ଜାଣି ନଥିବା କିମ୍ୱା ଉଡାଜାହଜରେ ପ୍ରଥମ ଥର ଯାଉଥିବା ଯାତ୍ରୀଙ୍କୁ ଅଯଥା ହଇରାଣ ହେବାକୁ ପଡିଥାଏ ।

ସେଦିନ ଆନ୍ତର୍ଜାତିକ ବିମାନଘାଟି ଦମ୍‌ଦମ୍ ବେଶ୍ ଚଳଚଞ୍ଚଳ ଥିଲାପରି ମୋର ମନେ ହେଲା ।

ସେଠାରେ ମୁଁ ଭାରତର ବିଭିନ୍ନ ଧର୍ମର ଓ ବିଭିନ୍ନ ଜାତିର ଲୋକମାନଙ୍କୁ ଦେଖିବାକୁ ପାଇଲି । ଏହାଛଡା ପୃଥିବୀର ବିଭିନ୍ନ ଦେଶର ଲୋକମାନଙ୍କୁ

ମଧ୍ୟ ଦେଖିଲି । ଗୋଟିଏ ସ୍ଥାନରେ ପୃଥିବୀର ଅଧିକାଂଶ ଦେଶର ଲୋକମାନଙ୍କୁ ଦେଖି ମୋ ମନ ବିଶେଷ ଆନନ୍ଦିତ ହେଲା ।

ସମସ୍ତେ ହେଉଛନ୍ତି ଯାତ୍ରୀ, ମାତ୍ର ସମସ୍ତଙ୍କର ଯାତ୍ରାର ଲକ୍ଷ୍ୟ ହେଉଛି ଭିନ୍ନ ଭିନ୍ନ । ଭିନ୍ନତା ମଧ୍ୟରେ ଐକ୍ୟର ପ୍ରତିଷ୍ଠା ଯେ ଏହି ବିମାନଘାଟିଟି କିଛି ସମୟ ପାଇଁ କରି ପାରିଛି ତାହା ବୁଝିବାକୁ ମୋତେ ଆଉ ବେଶୀ ଡେରି ଲାଗିଲା ନାହିଁ ।

ସାରାବିଶ୍ୱ : ଏକ ପରିବାର : ଏହାର ପ୍ରତିଫଳନ ମୁଁ ସେଦିନ ଦମ୍‌ଦମ୍ ବିମାନଘାଟିରେ ଦେଖିବାକୁ ପାଇଥିଲି ।

ମୋ ମନରେ ଏପରି ଉଦ୍‌ବେଳନ ଲକ୍ଷ୍ୟକରି ଜଣେ ବନ୍ଧୁ ମୋତେ କହିଲେ, "କ'ଣ ବିଲାତ ଯିବାକୁ ଇଚ୍ଛା ହେଉନି କି ? ଏଣେ ଯେ ଆମର ଜିନିଷପତ୍ର ଉଡାଜାହାଜରେ ଯିବା ପାଇଁ ନିର୍ଦ୍ଦିଷ୍ଟ କାଉଣ୍ଟରରେ ଦେବାକୁ ପଡିବ !"

ବନ୍ଧୁଙ୍କର କଥାଶୁଣି ମୁଁ ପ୍ରକୃତିସ୍ଥ ହେଲି । କାଳ ବିଳମ୍ବ ନକରି ନିର୍ଦ୍ଦିଷ୍ଟ କାଉଣ୍ଟରରେ ମୋର ଜିନିଷପତ୍ର ଥିବା ବ୍ୟାଗ୍‌ଟିକୁ ଦେଇ ରସିଦ୍ ନେଲି । ସେହିପରି କିଛି ଭାରତୀୟ ମୁଦ୍ରାର ବିନିମୟରେ ବିମାନ ଘାଟିରେ ଥିବା ବ୍ୟାଙ୍କ କାଉଣ୍ଟରରୁ କିଛି ପାଉଣ୍ଡ (ବିଲାତ୍ ମୁଦ୍ରା) ଆଣିଲି । କାରଣ ଭାରତୀୟ ମୁଦ୍ରା ବିଲାତରେ ଚଳିବ ନାହିଁ ।

ବିଲାତରେ ପହଞ୍ଚୁ ପହଞ୍ଚୁ ପାଉଣ୍ଡର ଆବଶ୍ୟକତା ପଡିଯିବ ।



# ବ୍ରିଟିଶ୍ ଆକାଶପଥର ବିମାନ ଅଭିମୁଖେ

ଜାନୁୟାରୀ ମାସ ୧୧ ତାରିଖ । ସେଦିନ ଆମେ ବ୍ରିଟିଶ୍ ଏୟାରୱେଜ (British Airways) ର ଯାତ୍ରାକରୁଥିବା ବିମାନଟି ବଙ୍ଗଳାଦେଶରୁ ଆସି କୋଲକାତା ବିମାନଘାଟିରେ ପହଞ୍ଚିବାର ଥିଲା । ଆଗରୁତ ଆମେ ଆମର ଜିନିଷପତ୍ର ବ୍ୟାଗ୍ କାଉଣ୍ଟରରେ ଦାଖଲ କରିସାରିଥିଲୁ । କେବଳ ନିରାପତ୍ତା ଜନିତ ବ୍ୟକ୍ତିଗତ ତଦାରଖ ବାକିଥିଲା ।

ବିମାନଟି ଆସିବା ସମୟ ପାଖାପାଖି ହେବାରୁ ଆମର ନିରାପତ୍ତା ଜନିତ ତଦାରଖ ନିମନ୍ତେ ଘୋଷଣା କରାଗଲା । କାଳେ କେତେବେଳେ କାହା ପାଖରେ ବିମାନଟିର ନିରାପତ୍ତା ଦୃଷ୍ଟି କୋଣରୁ ଆପତ୍ତି ଜନକ ସାମଗ୍ରୀ ଥିବ । ଯଦି ଥାଏ, ତେବେ ସେ ବ୍ୟକ୍ତିଙ୍କର ସେ ସବୁ ଜିନିଷ ବ୍ୟାଜାପ୍ତି କରାଯିବ କିମ୍ବା ତାଙ୍କୁ ଆଉ ଯାତ୍ରା କରିବାକୁ ଅନୁମତି ଦିଆଯିବ ନାହିଁ ।

ଯଥା ସମୟରେ ସେଦିନ ସେହି ବିମାନରେ ବିଭିନ୍ନ ସ୍ଥାନକୁ ଯିବାକୁ ଥିବା ଯାତ୍ରୀମାନଙ୍କର ନିରାପତ୍ତା ଜନିତ ତଦାରଖ ନିରାପତ୍ତା ରକ୍ଷୀମାନଙ୍କ ଦ୍ୱାରା କରାଯାଇଥିଲା । ବ୍ୟକ୍ତିଗତ ତଦାରଖପରେ ସମସ୍ତଙ୍କୁ ଅପେକ୍ଷା ଗୃହରେ ରହିବାକୁ କୁହାଯାଇଥିଲା ।

ସମୟ ପ୍ରାୟ ସାଢେ ଆଠଟା ହେବ । ଅପେକ୍ଷା ଗୃହରେ ମୁଁ ବସି ରହିଛି ।

ଗୃହର କାଚ ଝରକା ଦେଇ ଦମ୍‌ଦମ୍ ବିମାନ ଘାଟିର ଦୃଶ୍ୟ ସ୍ପଷ୍ଟ ଦେଖି ହେଉଥାଏ । ଉଜ୍ଜଳ ଆଲୋକରେ ଯେତେ ଯେମିତି ବିମାନ ଘାଟିଟି ସଜ୍ଜା ଯାଇଅଛି । ବିଭିନ୍ନ ସ୍ଥାନରୁ ଦେଶରୁ ଆସୁଥିବା ଓ ଯାଉଥିବା ବିମାନ ଗୁଡିକରେ ଉଡାଣ ଦୃଶ୍ୟ ମଧ୍ୟ ଅଧିକ ଚିତ୍ତାକର୍ଷକ ଥିଲା ।

କିଛିକ୍ଷଣ ମଧ୍ୟରେ ଆମେ ଯାତ୍ରା କରିବାକୁ ଥିବା ବ୍ରିଟିଶ ଏୟାରଓ୍ୱେଜର ବିମାନଟି ଦମ୍‌ଦମ୍ ବିମାନଘାଟିରେ ଅବତରଣ କଲା । ବିମାନଟିରୁ କୋଲକାତା ଆସିଥିବା ଯାତ୍ରୀମାନେ ସେଠାରେ ଓହ୍ଲାଇଗଲେ । କିଛି ସମୟପରେ ଆମକୁ ବିମାନ ନିକଟକୁ ଯିବାକୁ କୁହାଗଲା । ଗଲାବେଳେ ବିମାନଘାଟିର କର୍ମଚାରୀମାନେ ଆମକୁ ଉଦ୍ଦିଷ୍ଟ ବିମାନ ନିକଟକୁ ଯିବାକୁ ସଂକେତ ଦେଉଥିଲେ । ଏହାଫଳରେ ଜଣେ ଯାତ୍ରୀ ଆଉ ଲକ୍ଷ୍ୟଭ୍ରଷ୍ଟ ନ ହୋଇ ଯାତ୍ରା କରିବାକୁ ଥିବା ବିମାନ ନିକଟରେ ପହଞ୍ଚିବ ।

ପୂର୍ବରୁ ଉଡାଜାହଜକୁ ଏତେ ପାଖରୁ ଦେଖିବାକୁ କେବେ ସୁଯୋଗ ମିଳି ନଥିଲା । ବ୍ରିଟିଶ୍ ଏୟାର ଓ୍ୱେଜର ଏହି ଆନ୍ତର୍ଜାତିକ ବିମାନଟି ଅତିବଡ ଥିଲା । ଜାହାଜଟିର ଯେତେ ପାଖକୁ ମୁଁ ଆଗେଇ ଯାଉଥାଏ, ତାର ବିରାଟକାୟ ଶରୀର ଆଉ ଅଧିକ ବଡ ଦେଖାଯାଉଥାଏ । ଦୁଇଟି ବଡ ବଡ ଡେଣା, ଗୋଟିଏ ବଡ ଲାଞ୍ଜ ସହିତ ବିମାନଟିର ଦୀର୍ଘ ଗୋଲାକାର ଶରୀର ଅତୀବ ଆକର୍ଷଣୀୟ ଦେଖାଯାଉଥାଏ ।

ସେତେବେଳେ ମୋର ମନେ ପଡିଥିଲା ରାଇଟବ୍ରଦର୍ସ (Wright brthers) ଭାତୃଦ୍ୱୟଙ୍କ କଥା । ସେମାନଙ୍କର ଆକାଶ ଯାତ୍ରାର ପ୍ରଥମ ରୋମାଞ୍ଚକର କାହାଣୀ । କି ଆବେଗ ! କି ଉତ୍କଣ୍ଠାର ସହିତ ସେମାନେ ୧୯୨୫ ମସିହାରେ ନିଜ ହାତତିଆରି ଉଡାଜାହଜରେ ପ୍ରଥମେ ଆକାଶକୁ ଉଡି ଯାଇନଥିଲେ ସତେ ! ସେମାନଙ୍କ ଅଦମ୍ୟ ପ୍ରଚେଷ୍ଟା ଯୋଗୁଁ ୧୯୦୮ ମସିହାରେ ସାଧାରଣ ଯାତ୍ରୀ ମଧ୍ୟ ଆକାଶ ଯାତ୍ରା କରିବାର ସୁଯୋଗ ପାଇଥିଲେ ।

ମାନବ ସଭ୍ୟତାକୁ ଋଦ୍ଧିମନ୍ତ ଓ ଚିତ୍ତାକର୍ଷକ କରିଥିବା ଓ ଆଧୁନିକ ଉଡାଜାହାଜର ପରିକଳ୍ପନା କରିଥିବା ସେଇ ବୈଜ୍ଞାନିକଦ୍ୱୟଙ୍କ ଉଦ୍ଦେଶ୍ୟରେ ମୋର ମୁଣ୍ଡ ଆପେ ଆପେ ନଇଁ ଆସିଲା ।



# ସତେ ଅବା ପୁଷ୍ପକ ଯାନଟିଏ ?

ବିମାନଟିରେ ପହଞ୍ଚିବା ପରେ ବିମାନର କର୍ମଚାରୀଗଣ ଆମକୁ ଆଗେ ବସିବାକୁ ଥିବା ସିଟ୍ ନିକଟକୁ ନେଇଗଲେ ଓ ବସିବାରେ ସାହାଯ୍ୟ କଲେ ।

ସାଧାରଣତଃ ସିଟ୍‌ନମ୍ବର ଦେବା ପୂର୍ବରୁ ଯାତ୍ରୀମାନଙ୍କୁ ପଚରାଯାଇଥାଏ ଯେ ସେମାନେ ଧୂମପାନ କରନ୍ତି କି ନାହିଁ ।

ଧୂମପାନ କରୁଥିବା ଯାତ୍ରୀମାନଙ୍କୁ ବିମାନଟିର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବସିବାକୁ ସିଟ୍ ଦିଆ ଯାଉଥିଲା । ଏହା ଫଳରେ ଧୂମପାନ କରୁନଥିବା ଯାତ୍ରୀମାନେ ଯାତ୍ରା ସମୟରେ ଧୂମପାନ ଜନିତ ହଇରାଣ ହରକତରୁ ରକ୍ଷାପାଇ ପାରୁଥିଲେ ।

ବିମାନଟିର ଭିତରର ଦୃଶ୍ୟ ବେଶ୍ ଚମକପ୍ରଦ ଥିଲା । ବାହାରୁ ବିମାନଟିକୁ ଲକ୍ଷ୍ୟକଲେ ଜଣା ପଡୁନଥିଲା ଯେ ଏହି ବିମାନଟିରେ ଚାରିଶହରୁ ଅଧିକ ଯାତ୍ରୀ ବସି ଯାଇପାରିବେ । ମାତ୍ର ଭିତରେ ଛଅଶହରୁ ଅଧିକ ଯାତ୍ରୀଙ୍କର ବସିବାର ଦୃଶ୍ୟ ସାଧାରଣ ଲୋକଙ୍କ ପାଇଁ ଆଶ୍ଚର୍ଯ୍ୟ ଜନକ ଥିଲା ।

ସମସ୍ତ ଯାତ୍ରୀ ଆସିସାରିବାପରେ ବିମାନଟିର ଦ୍ୱାର ବନ୍ଦ ହେଲା । ଆମ୍ଭମାନଙ୍କ ଉଦ୍ଦେଶ୍ୟରେ କୁହାଗଲା "ଦମ୍‌ଦମ୍ ବିମାନଘାଟିରୁ ଆସିଥିବା ଯାତ୍ରୀମାନଙ୍କୁ ଆମେ ଅଭିନନ୍ଦନ ଜଣାଉଛୁଁ । ଆଶା କରୁଛୁ ସେମାନଙ୍କର ଯାତ୍ରା ସଫଳ ଓ ନିରାପଦ ହେବ ।"

ଏହାପରେ ଜଣୈକ ବିମାନ କର୍ମଚାରୀ ଆମେ ବସିଥିବା ସିଟ୍ ନିକଟରେ ଥିବା ବେଲଟ୍‌ଟିକୁ କିପରି ପିନ୍ଧାଯିବ ଓ କଢା ଯିବ ତାହା ପ୍ରଦର୍ଶନ କଲେ । ସେହିପରି ଦରକାର ବେଳେ କିପରି ଅମ୍ଳଜାନ ଥଳୀଟି ମୁହଁରେ ଦିଆଯିବ ତାହା ମଧ୍ୟ ପ୍ରଦର୍ଶନ କରି ଦେଖାଇଲେ । ସାଧାରଣତଃ ବିମାନଟି ବାୟୁମଣ୍ଡଳ ଭେଦୀ ଉପରକୁ ଗଲାବେଳେ ବାୟୁର ଚାପରେ ତାରତମ୍ୟ ଘଟିଥାଏ । ନିଃଶ୍ୱାସ ପ୍ରଶ୍ୱାସ ନେବାରେ କେତେକ ଯାତ୍ରୀ କଷ୍ଟ ଅନୁଭବ କରିଥାନ୍ତି । ସେଥିପାଇଁ

ସେମାନେ ନାକ ପାଖରେ ଅମ୍ଳଜାନ ଥଳୀରଖି ନିଃଶ୍ୱାସ ପ୍ରଶ୍ୱାସ ନେଲେ ଆଉ କଷ୍ଟ ଅନୁଭବ କରନ୍ତି ନାହିଁ ।

ବିମାନକର୍ମଚାରୀଙ୍କ ବର୍ଣ୍ଣନା ସରିବା ପରେ ପରେ ବିମାନର ଡେଣାରେ ଥିବା ପଙ୍ଖାଦ୍ୱୟ ଖୁବ୍ ଜୋରରେ ଘୂରିବାକୁ ଲାଗିଲା ।

ବିମାନଟି ଯେ ଦମ୍‌ଦମ୍ ବିମାନଘାଟି ଛାଡିବା ଉପରେ ଏକଥା ଆଉ ବୁଝିବାକୁ ଯାତ୍ରୀମାନଙ୍କୁ ବେଶୀ ସମୟ ଲାଗିଲା ନାହିଁ । ସମସ୍ତେ ନିଜନିଜ ସିଟ୍‌ରେ ଥିବା ବେଲଟ୍‌ବାନ୍ଧି ସାରିଥିଲେ । ମାତ୍ର ଯେଉଁମାନେ ବାନ୍ଧି ନଥିଲେ, ସେମାନଙ୍କ ପାଖକୁ ଆସି ବିମାନ ପରିଚାଳିକା ବାନ୍ଧିବାକୁ କହିଲେ ।

କିଛି ସମୟପରେ ବିମାନ ଉଡାଣ ରାସ୍ତା (Runway)ରେ ଆଗେଇ ଚାଲିଲା ।

ପରେ ପରେ ବିମାନର ଚାଲିବାର ଗତି କ୍ଷୀପ୍ରହେଲା ଓ ବିମାନର ଶବ୍ଦ ମଧ୍ୟ ଭୀଷଣରୁ ଭୀଷଣତର ହେଲା ।

ଶେଷରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବିମାନଟି ଆକାଶକୁ ଉଠିବାକୁ ଲାଗିଲା ।

ସେତେବେଳକୁ ରାତ୍ରି ପ୍ରାୟ ୯ଟା୩୦ ମିନିଟ ହୋଇଥାଏ ।

ବିଲାତ ଯିବା ପୂର୍ବରୁ ପ୍ରିୟ ଜନ୍ମଭୂମିକୁ ପୁଣିଥରେ ମନ ପୂରେଇ ଦେଖି ନେବାକୁ ଇଚ୍ଛା ହେଲା ।

ବିମାନର ଝର୍କାଦେଇ ମୁଁ ଆକାଶ ମାର୍ଗରୁ କୋଲ୍‌କାତା ନଗରୀକୁ ପୁଣିଥରେ ଚାହିଁଲି ।

ବିଭିନ୍ନ ଆଲୋକମାଳାରେ ସୁସଜ୍ଜିତ କୋଲକାତା ନଗରୀର କୋଠାବାଡି ରାସ୍ତାଘାଟ, ଜାନ ବାହନ ଆଦି କେତେ ସୁନ୍ଦର ଦେଖା ଯାଉ ନଥିଲେ ସତେ !

ଚାହୁଁ ଚାହୁଁ କ୍ଷଣିକ ମଧ୍ୟରେ କୋଲକାତା ନଗରୀର ଦୃଶ୍ୟରାଜି ଆଖି ଆଗରୁ ଅପସରିଗଲା ।

ବିମାନ ପରିଚାଳିକା (Airhostess) ଆସି ଯାତ୍ରୀମାନଙ୍କୁ ଖାଦ୍ୟ ଓ ପାନୀୟ ଦେଲେ । କିଛି ସମୟପରେ ରାତି ଭୋଜନର ଖାଦ୍ୟ ଦିଆଗଲା । ଏହି ଖାଦ୍ୟ

ପୁଡିଆ ଗୁଡିକ ସାଧାରଣତଃ ଦୁଇ ପ୍ରକାରର ଥିଲା । ଯେଉଁମାନେ ନିରାମିଷାଶୀ ସେମାନଙ୍କୁ ନିରାମିଷାଶୀ ଖାଦ୍ୟ ଓ ଆମିଷାଷୀ ମାନଙ୍କୁ ମାଂସଯୁକ୍ତ ଖାଦ୍ୟ ଦିଆଗଲା ।

ସାଧାରଣତଃ ପାନୀୟଗୁଡିକ ଦୁଇ ପ୍ରକାରର ଥିଲା ଯଥା: କଡାପାନୀୟ (Hard drinks) ଓ ନରମ ପାନୀୟ (Soft drinks) କଡାପାନୀୟ ମଧ୍ୟରେ ବିୟର ଆଦି ମଦଯୁକ୍ତ ପାନୀୟ ଓ ନରମ ପାନୀୟ ମଧ୍ୟରେ କୋକାକୋଲା, ଫାଣ୍ଟା, ଭାରତୀୟ ସୋଡା ଆଦି ଥିଲା ।

ପ୍ରାୟ ରାତି ଦୁଇଟା ବେଳକୁ ଆମର ବିମାନଟି ଦୋହା ଆନ୍ତର୍ଜାତିକ ବିମାନଘାଟିରେ ଅବତରଣ କଲା ।

ସେଠାରେ ଆମଦେଶ ଓ ବଙ୍ଗଳା ଦେଶର କେତେକ ଯାତ୍ରୀ ଅବତରଣ କଲେ ।

ସେମାନଙ୍କ ମଧ୍ୟରୁ ଅଧିକାଂଶ ଶ୍ରମିକ ଶ୍ରେଣୀର ଥିଲେ ।

ଦୋହା ଆନ୍ତର୍ଜାତିକ ବିମାନଘାଟିରେ ବିମାନଟି ପ୍ରାୟ ଅଧଘଣ୍ଟାକ ପାଇଁ ରହିଲା । ସେଠାରେ ଚଢିଥିବା ନୂତନ ଯାତ୍ରୀମାନଙ୍କୁ ସ୍ୱାଗତ ଜଣାଇଲା ପରେ ବିମାନଟି ପୁଣି ବିଲାତ ଅଭିମୁଖେ ତା'ର ଯାତ୍ରା ଆରମ୍ଭ କଲା ।

ବିମାନଟିରେ ଯାତ୍ରା କଲାବେଳେ ବିଶେଷ ଆନନ୍ଦ ଲାଗୁଥିଲା । ଏକ ବଡଘରେ ବସିଥିବା ବିଭିନ୍ନ ଯାତ୍ରୀଙ୍କ ସହିତ ଘରଟିକୁ ଉଡେଇ ବିମାନଟି ଉଡି ଚାଲୁଥିଲା ।

ସତେ ଯେମିତି ପୁରାଣଯୁଗର ବର୍ଣ୍ଣିତ ପୁଷ୍ପକ ଯାନଟିଏ !



# ହିଥ୍ରୋ ବିମାନଘାଟିରେ ଆମେ

ଜାନୁୟାରୀ ମାସ ୧୨ ତାରିଖ ।

ସମୟ ସକାଳ ସାତଟା ପାଖାପାଖି ହେବ । ଆମର ବିମାନଟି ଲଣ୍ଡନ ସହରସ୍ଥିତ ହିଥ୍ରୋଆନ୍ତର୍ଜାତିକ ବିମାନଘାଟିରେ ଅବତରଣ କଲା । ଅବତରଣ ପୂର୍ବରୁ ଆମକୁ ଲଣ୍ଡନ ସହରର ତାପମାତ୍ରା ସର୍ବାଧିକ ୫ ଡିଗ୍ରୀ ସେଲେସିୟସ ଥିବା କଥା କୁହାଯାଇଥିଲା ଓ ଘନକୁହୁଡି ମଧ୍ୟରେ ବିମାନଟି ଅବତରଣ କରୁଛି ବୋଲି ଜଣାଇ ଦିଆଯାଇଥିଲା ।

ଅବତରଣ ପରେ ବିମାନର ଦ୍ୱାର ଆପେ ଆପେ ଖୋଲି ଆସିଲା । ଦୀର୍ଘପଥ ଆମକୁ ଉଡାଇ ଆଣିଥିବା ବ୍ରିଟିଶ୍ ଏୟାର ଓ୍ୱେଜର ପାଇଲଟଗଣ ବିମାନଟିର ଦ୍ୱାରଦେଶରେ ଠିଆ ହୋଇ ଆମକୁ ବିଦାୟ‌ସମ୍ବର୍ଦ୍ଧନା ଜଣାଇଲେ ।

ବିମାନରୁ ଓହ୍ଲାଇ ଆମେ ହିଥ୍ରୋ ବିମାନଘାଟିରେ ବିଭିନ୍ନ କାଉଣ୍ଟର କୁଗଲୁ । ସେଠାରେ ଆମ ଯାତ୍ରା ସଂପର୍କୀୟ କାଗଜ ପତ୍ର ଦେଖାଇଲୁ । ଆସିଲା ବେଳେ ଆମେ ଯେମିତି ଇମ୍ମିଗ୍ରେସନ ପ୍ରମାଣ ପତ୍ର ନଥିବାରୁ ବିଲାତ ଆସି ପାରିବୁ ନାହିଁ ବୋଲି ଦମ୍‌ଦମ୍ ବିମାନ ଘାଟିରେ କୁହାଯାଇଥିଲା, ସେହିପରି ଆମକୁ ହିଥ୍ରୋ ବିମାନ ଘାଟିରେ ଏହି ପ୍ରମାଣ ପତ୍ର ଅଭାବରେ ଲଣ୍ଡନ ସହର ମଧ୍ୟକୁ ପଶି ପାରିବୁ ନାହିଁ କୁହାଗଲା ।

ଏ ସଂପର୍କରେ ଆମେ ଆମର ପୂର୍ବଜ୍ଞାନକୁ ସମ୍ବଳ କରି କହିଲୁ ଯେ ଆମେ ଛାତ୍ର ହିସାବରେ ବ୍ରିଟିଶ କାଉନ୍‌ସିଲ ବୃତ୍ତିପାଇ ଉଚ୍ଚଶିକ୍ଷା ପାଇଁ ଗ୍ରେଟ୍ ବ୍ରିଟେନ ଆସିଛୁ ଓ ଆମପାଇଁ ଇମ୍ମିଗ୍ରେସନ ପ୍ରମାଣପତ୍ର ଦରକାର ନାହିଁ ।

ଏହା ଶୁଣି ସାରିବା ପରେ ତଦାରଖ ଅଧିକାରୀ ନିଜର ଭୁଲ ବୁଝି ପାରିଥିଲେ ଓ ଆମକୁ ବିଲାତରେ ପ୍ରବେଶ କରିବା ନିମନ୍ତେ ଅନୁମତି ଦେଇଥିଲେ ।

ଆମକୁ ବିଲାତ ଆସିବା ପୂର୍ବରୁ ହିଥ୍ରୋ ବିମାନଘାଟିରୁ ସିଧା ଲଣ୍ଡନ ଷ୍ଟେସନରେ ଅବସ୍ଥିତ ବ୍ରିଟିଶ କାଉନସିଲ ଅଫିସ ଅଭିମୁଖେ ଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ନିର୍ଦ୍ଦେଶ ମତେ ଆମେ ଲଣ୍ଡନ ସହର ଅଭିମୁଖେ ବାହାରିଲୁ ।

ହିଥ୍ରୋ ବିମାନଘାଟିରୁ ଲଣ୍ଡନ ଷ୍ଟେସନର ଦ୍ୱରତ୍ୱ ପ୍ରାୟ ୨୫ କିଲୋମିଟର । ଲଣ୍ଡନ ଷ୍ଟେସନରେ ପହଞ୍ଚିବା ପାଇଁ ଆମକୁ ବସଟିଏ ଧରିବାକୁ ପଡ଼ିଲା ।

ସେତେବେଳକୁ ବ୍ରିଟିଶ ସମୟ ହୋଇଥାଏ ଦିନ ଆଠଟା । ଆମ ଦେଶରେ ସାଧାରଣତଃ ଦିନ ଆଠଟା ବେଳକୁ ରାତ୍ରି ପାହିବାର ସମସ୍ତ ସୂଚନା ଅପସାରିତ ହୋଇ ଯାଇଥାଏ । ଜନଜୀବନ ଚଳ ଚଞ୍ଚଳ ହୋଇ ଉଠିଥାଏ ।

ମାତ୍ର ସେଠାରେ ଦିନ ଆଠଟା ବେଳେ ଚାରିଆଡେ ଘେରି ରହିଥାଏ ଘନ ଅନ୍ଧକାର । ତୁହାକୁ ତୁହା ଥଣ୍ଡା ପବନର ସ୍ରୋତ । ସେହି ସ୍ରୋତରେ ଚାଲିବା ବେଳକୁ ଦେହ ଅତ୍ୟଧିକ ଥଣ୍ଡାରେ କାଲୁଆ ମାରି ଯାଉଥାଏ ।

ଏପରି ଏକ ଅଦ୍ଭୁତ ପରିବେଶରେ ପହଞ୍ଚି ମୋତେ ଆଶ୍ଚର୍ଯ୍ୟ ଲାଗିଲା ।

ପାଣିପାଗର ସଂପୂର୍ଣ୍ଣ ନୂତନ ଅନୁଭୂତି ଯୋଗୁଁ ମନରେ ଯେତିକି ବିସ୍ମୟ ସୃଷ୍ଟି ହେଲା, ସେତିକି ଭୟ ମଧ୍ୟ ଦେଖାଦେଲା ।

କାଳେ ଏପରି ପରିସ୍ଥିତିରେ ଦେହ ପା' ଖରାପ ହୋଇଯିବ, ତାହାହିଁ ଭୟର କାରଣ ଥିଲା ।

ଯାତ୍ରୀମାନଙ୍କୁ ପଚାରି ଆମେ ବସରୁ ଲଣ୍ଡନ ଷ୍ଟେସନ ପାଖା ପାଖି ଓହ୍ଲାଇଲୁ ।

ତା'ପରେ ଆମର ଚିନ୍ତା ହେଲା ଆମେ କିପରି ବ୍ରିଟିଶ କାଉନସିଲ ଅଫିସ ପାଇବୁ ?



# ସାହେବ କହିଲେ ! ଏଠିବି ଠକ ଅଛନ୍ତି

ଆମେତ ଆଗରୁ ଜାଣିଥିଲୁ ଯେ ଆମକୁ ଲଣ୍ଡନ ଷ୍ଟେସନ ଭିତରେ ଥିବା ବ୍ରିଟିଶ କାଉନ୍‌ସିଲ୍‌ର ଅଫିସରେ ପହଞ୍ଚିବାକୁ ପଡିବ । ମାତ୍ର ଷ୍ଟେସନ ପାଖା ପାଖି ଓହ୍ଲାଇଲାପରେ ଆମର ସମସ୍ୟା ହେଲା କିପରି ଲଣ୍ଡନ ଷ୍ଟେସନର ଅବସ୍ଥିତି ଜାଣିବୁ ।

ଏତେ ସକାଳୁ ମଧ୍ୟ ଆମେ ରାସ୍ତାରେ ବିଶେଷ ପଦଚାରୀମାନଙ୍କୁ ଦେଖିବାକୁ ପାଉ ନ ଥିଲୁ । ଯାହାହେଉ ଜଣେ ସାହେବ ଆମ ନଜରରେ ଆସିଲେ । ଆମେ ତାଙ୍କୁ ଲଣ୍ଡନ ଷ୍ଟେସନର ଅବସ୍ଥିତି ସଂପର୍କରେ ପଚାରିଲୁ ।

ସାହେବ ଜଣଙ୍କ ଆମକୁ ବାଟ ବତାଇ ଦେଲେ ।

ଅଳ୍ପ କିଛି ବାଟ ଯାଇ ଆମେ ଆଉଜଣେ ସାହେବଙ୍କୁ ଲଣ୍ଡନ ଷ୍ଟେସନ ଓ ବ୍ରିଟିଶ କାଉନ୍‌ସିଲ ଅଫିସ ସଂପର୍କରେ ପଚାରିଲୁ । ଆମ ପାଟିରୁ କଥା ସରୁ ନ ସରୁଣୁ ସେ ଆମ୍ଭମାନଙ୍କ ମଧ୍ୟରୁ ଜଣଙ୍କର ଆଟାଚି ହାତରେ ଧରିଲେ । ପୁନଶ୍ଚ ମୋର ଅନ୍ୟଜଣେ ବନ୍ଧୁଙ୍କ ଆଟାଚି ଓ ମୋ ଆଟାଚି ଛଡାଇବାକୁ ଚାହିଁବାରୁ ଆମେ ଦୁହେଁ ତାଙ୍କୁ ଆମର ଆଟାଚି ଦେଲୁ ନାହିଁ ।

ତା'ପରେ ସେ କ୍ଷୀପ୍ର ଗତିରେ ଆଗେଇ ଚାଲିଲେ ।

ତାଙ୍କର ଆଚରଣ ସନ୍ଦେହ ଜନକ ଜଣା ପଡୁଥିଲା । ତେଣୁ ଆମେ ତିନିଜଣ ମଧ୍ୟ ତାଙ୍କ ପଛେ ପଛେ ଜୋରରେ ଚାଲିଲୁ ।

ସେ ଆମକୁ ଲଣ୍ଡନ ଷ୍ଟେସନରେ ଥିବା ବ୍ରିଟିଶ କାଉନ୍‌ସିଲର ଅଫିସରେ ପହଞ୍ଚାଇ ଦେଲେ ।

ସେଇ ଅଫିସରେ ଥିବା ବ୍ୟକ୍ତି ଜଣଙ୍କ ଆମକୁ ଦେଖି କହିଲେ, "ଓଃ ଆପଣମାନେ ଆସିଗଲେ । ଭଲ ହେଲା ।"

ଆମେ ଯେତେବେଳେ ଆମକୁ ସେ ସ୍ଥାନକୁ ନେଇଥିବା ପୂର୍ବୋକ୍ତ ସାହେବ ଜଣକୁ ଧନ୍ୟବାଦ ଦେଲୁ ଓ ବିଦାୟ ଦେବାକୁ ବସିଲୁ ସେ ଆଉ ସେ ସ୍ଥାନ ଛାଡି ଗଲେ ନାହିଁ । ଯେଉଁ ବନ୍ଧୁ ଜଣଙ୍କ ଆଟାଚି ଛଡାଇ ନେଇଥିଲେ ତାଙ୍କୁ କହିଲେ, "ମୋତେ ମୋର କାମ ପାଇଁ ପାଞ୍ଚ ପାଉଣ୍ଡ ଦିଅନ୍ତୁ ।"

ତାଙ୍କର ଆଚରଣ ଆମକୁ ଆଶ୍ଚର୍ଯ୍ୟ ଲାଗିଲା । ଦମଦମ ଆନ୍ତର୍ଜାତିକ ବିମାନଘାଟି ଛାଡିଲାବେଳେ ଆମେ ପ୍ରତ୍ୟେକ ପ୍ରାୟ ଦଶ ପାଉଣ୍ଡ ଲେଖାଏଁ ମୁଦ୍ରା ନେଇଥିଲୁ । ସେଥିରୁ ବନ୍ଧୁ ଜଣଙ୍କ ପାଞ୍ଚ ପାଉଣ୍ଡ ଦେଲେ ସେ ଲଣ୍ଡନ ସହରରୁ ଯାଇ କାର୍ଲଲାଇଲରେ ପହଞ୍ଚିବା କଷ୍ଟକର ହେବ । ପୁନଶ୍ଚ ବୈଦେଶିକ ମୁଦ୍ରା ପାଞ୍ଚ ପାଉଣ୍ଡର ମୂଲ୍ୟ ତାଙ୍କ ପାଇଁ ଯଥେଷ୍ଟ ଥିଲା ।

ବନ୍ଧୁ ଜଣଙ୍କ ଯେ ଠକାମିରେ ପଡି ଯାଇଛନ୍ତି ଏକଥା ବୁଝିବାକୁ ଆଉ ବେଶୀ ଡେରି ଲାଗିଲା ନାହିଁ । ଆମେ ଦୁଇ ବନ୍ଧୁ ସେ ଠକ ହାବୁଡରୁ ଅଳ୍ପକେ ବର୍ତ୍ତି ଯାଇଥିବା ହେତୁ ମନେ ମନେ ଟିକିଏ ଆଶ୍ୱସ୍ତି ଲାଭ କଲୁ ।

ଯାହାହେଉ ସାହେବ ଜଣକ ବାରମ୍ବାର ବନ୍ଧୁଙ୍କୁ ପାଉଣା ମାଗିବାରୁ ସେ ବ୍ରିଟିଶ କାଉନସିଲ ଅଫିସରେ ଆମକୁ ସ୍ୱାଗତ କରିଥିବା କର୍ମଚାରୀ ଜଣଙ୍କ ସାହାଯ୍ୟ ମାଗିଲେ । ମାତ୍ର ସେ କର୍ମଚାରୀ ଜଣକ କହିଲେ, "ଦେଖନ୍ତୁ, ଆପଣଙ୍କ ଭିତରେ ଓ ତାଙ୍କ ଭିତରେ କ'ଣ କଥାବାର୍ତ୍ତା ହୋଇଛି ତାହା ମୁଁ ଜାଣି ନାହିଁ । ସେ ଆପଣଙ୍କୁ ସେବା (Service) ଦେଇଛନ୍ତି । ସେବା ବିନିମୟରେ କିଛି ଅର୍ଥ ମାଗୁଛନ୍ତି । ତେଣୁ ଆପଣମାନଙ୍କ କଥାବାର୍ତ୍ତା ମଧ୍ୟରେ ମୁଁ ପଶିବାକୁ ଚାହୁଁ ନାହିଁ ।"

ତାଙ୍କଠାରୁ ଏପରି କଥାଶୁଣି ବନ୍ଧୁଜଣଙ୍କ ନିରାଶ ହେଲେ । ପରିଶେଷରେ ସାହେବ ଜଣଙ୍କୁ ଦୁଇପାଉଣ୍ଡ ଦେଲେ ଓ ତାଙ୍କ କବଳରୁ ମୁକ୍ତି ପାଇଲେ ।

ସାହେବ ଜଣକ ଚାଲିଗଲା ପରେ ବ୍ରିଟିଶ କାଉନସିଲର ପ୍ରତିନିଧି ଖୁବ୍ ବ୍ୟସ୍ତହେଲେ । ନିଜ ଦେଶକୁ ଆସିଥିବା ଜଣେ ବ୍ୟକ୍ତିଙ୍କର ଯେ ଦୁଇ ପାଉଣ୍ଡ ଏପରି ଚାଲିଯିବ, ତାହା ସେ ଚାହୁଁ ନଥିଲେ । ଯେହେତୁ ସେବା ବିନିମୟରେ

ସେ କିଛି ଅର୍ଥ ଚାହୁଁଥିଲେ ସେଥିପାଇଁ ପ୍ରତିନିଧି କଣକ କିଛି କହିପାରିଲେ ନାହିଁ ।

ସାହବ ଜଣଙ୍କ ଚାଲିଗଲା ପରେ ସେ ଦୁଃଖ ପ୍ରକାଶ କଲେ ।

କହିଲେ, "ଆପଣମାନେ ନୂଆକରି ଆମ ଦେଶକୁ ଆସିଛନ୍ତି । ଜଗିରଖି ଚଳିବେ । ଆପଣମାନଙ୍କ ଦେଶରେ ଯେମିତି କିଛି ଠକ ଶ୍ରେଣୀର ଲୋକ ଅଛନ୍ତି ଆମ ଦେଶରେ ସେମିତି ମଧ୍ୟ କେତେକ ଠକ ଅଛନ୍ତି । ଟିକିଏ ସୁବିଧା ସୁଯୋଗ ପାଇଲେ ଆପଣମାନଙ୍କୁ ଅସୁବିଧାରେ ପକାଇବେ ।"

ବ୍ରିଟିଶ କାଉନ୍‌ସିଲ୍‌ର ପ୍ରତିନିଧିଜଣଙ୍କ ଏହି ଉପଦେଶଟି ଆମ ପାଇଁ ମହାର୍ଘ ଥିଲା ।

କିଛି ସମୟପରେ ସେ ଆମ ତିନିବନ୍ଧୁଙ୍କୁ ଆମନାମରେ ଥିବା ଚିଠି ଦେଲେ । ଚିଠିଟି ଥିଲା ଆମ ପୋଗ୍ରାମ ଦାୟିତ୍ୱରେ ଥିବା କୁମାରୀ ଫିହାନଙ୍କର ।

କୁମାରୀ ଫିହାନ୍ ତାଙ୍କ ଚିଠିରେ ଲେଖିଥିଲେ, "ଆପଣମାନେ ଦୂରପଥ ଅତିକ୍ରମ କରି ଆମ ଦେଶରେ ପହଞ୍ଚିଥିବାରୁ ମୁଁ ବିଶେଷ ଖୁସି । ଆଶା, ଆପଣମାନେ ଆପଣମାନଙ୍କର ଏହି ତିନିମାସର ରହଣି ମଧ୍ୟରେ ଶିକ୍ଷା କରିବାକୁ ଆସିଥିବା ପାଠ୍ୟକ୍ରମକୁ ଉପଭୋଗ କରିବେ । ତତ୍ ସଙ୍ଗେ ସଙ୍ଗେ ଆମ ଦେଶର ଚାଲିଚଳନ, ସଂସ୍କୃତି ସଂପର୍କରେ ଜାଣିବା ସହିତ ଆମ ଦେଶର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରିବେ ।"

ଏ ଚିଠି ବ୍ୟତୀତ ଆମକୁ କାର୍ଲାଇଲ ଯିବାପାଇଁ ଟିକେଟ୍ ଦିଆଗଲା । ଆମ୍ଭେମାନେ କାର୍ଲାଇଲ ଯିବାପାଇଁ ଲଣ୍ଡନସ୍ଥିତ ଇଉଷ୍ଟନଷ୍ଟେସନରେ ପହଞ୍ଚିଲୁ । ଆମକୁ ଆମ ଚିଠିରେ କାର୍ଲାଇଲ ଯିବା ନିମନ୍ତେ ଏକ ନିର୍ଦ୍ଦିଷ୍ଟ ଗାଡ଼ିରେ ଯିବାକୁ କୁହାଯାଇଥିଲା ।



# କାର୍ଲଲାଇଲ ଅଭିମୁଖେ

ଲଣ୍ଡନସ୍ଥିତ ଇଉଷ୍ଟନ ଷ୍ଟେସନରେ ପହଞ୍ଚି ଆମେ ଦେଖିଲୁଯେ କାର୍ଲଲାଇଲ ଅଭିମୁଖେ ଗୋଟିଏ ଟ୍ରେନ୍ ଛିଡା ହୋଇଅଛି । ପଚରାପଚରି କରି ବୁଝିଲୁ ଯେ ଆମକୁ ଯିବା ପାଇଁ କୁହାଯାଇଥିବା ଟ୍ରେନଟି କାର୍ଲଲାଇଲ ଅଭିମୁଖେ ଦୁଇ ଘଣ୍ଟାପରେ ଛାଡିବ । ସେତେବେଳକୁ ଦେହ କ୍ଳାନ୍ତ ହୋଇ ପଡିଥାଏ । ମନ ଅବସନ୍ନ ଲାଗୁଥାଏ ।

ଆଉ ଦୁଇଘଣ୍ଟା ଅପେକ୍ଷା କରିବା ଆମପାଇଁ ଗୋଟିଏ ଯୁଗପରି ଲାଗିବ ବୋଲି ଆମେ ବେଶ୍ ଭଲଭାବରେ ବୁଝି ପାରିଲୁ ।

ନିର୍ଦ୍ଦିଷ୍ଟ ଏକ ଟ୍ରେନରେ ଯିବା ପାଇଁ କୁହାଯିବାର କାରଣ ହେଲାଯେ ଆମ ଶିକ୍ଷାନୁଷ୍ଠାନରୁ କେହି ଜଣେ ଆସି ଆମକୁ ଅପେକ୍ଷା କରିଥିବେ ଓ ଆମକୁ ଆମ ଶିକ୍ଷାନୁଷ୍ଠାନକୁ ନେଇ ଯିବେ । ଏହା ଫଳରେ ଆମକୁ ଆମ ରହଣିସ୍ଥାନ ଓ ଶିକ୍ଷାନୁଷ୍ଠାନ ଖୋଜି ବାହାର କରିବା ପାଇଁ କଷ୍ଟ ହେବ ନାହିଁ ।

ପୁନଶ୍ଚ ସେହି ଚିଠିରେ ଗୋଟିଏ ଧାଡି ଲେଖା ହୋଇଥିଲା ଯେ ଯଦି ଷ୍ଟେସନକୁ କେହି ଆମକୁ ପାଛୋଟି ନେବାକୁ ନ ଆସିଥାନ୍ତି, ତେବେ ସିଧା ଆମର ରହଣିସ୍ଥାନ କାର୍ଲଲାଇଲସ୍ଥିତ ୟୁକ୍ରେନିୟନ୍ ହଷ୍ଟେଲ ଯିବା ପାଇଁ ।

ଏହିସବୁ ଦୃଷ୍ଟି କୋଣରୁ ଆମେ ଆଉ ଦୁଇ ଘଣ୍ଟା ଇଉଷ୍ଟନ ଷ୍ଟେସନରେ ନିର୍ଦ୍ଦିଷ୍ଟ ଗାଡିକୁ ଅପେକ୍ଷା କରି ରହିବାକୁ ପସନ୍ଦ କଲୁନାହିଁ ।

ଦିନ ଦଶଟା ବେଳେ କାର୍ଲଲାଇଲ ଅଭିମୁଖେ ଯାଉଥିବା ଟ୍ରେନ୍‌ରେ ବସିପଡିଲୁ ।

କାର୍ଲଲାଇଲ ଷ୍ଟେସନରୁ ଓହ୍ଲାଇ ସିଧା ୟୁକ୍ରେନିୟନ୍ କ୍ଲବରେ ପହଞ୍ଚିଲୁ ।



# ଆମ ରହଣି ସ୍ଥାନ : ୟୁକ୍ରେନିୟନ୍ କ୍ଲବ

ୟୁକ୍ରେନିୟନ୍ (Ukrainian) ହେଉଛନ୍ତି ପୂର୍ବ ଇଉରୋପରେ ଅବସ୍ଥିତ ୟୁକ୍ରେନ୍ (Ukraine) ଦେଶର ଅଧିବାସୀ । ସେହି ସଂପ୍ରଦାୟର ଅଧିକାଂଶ ଲୋକ କାର୍ଲଲାଇଲ ଓ ଏହାର ଆଖପାଖ ଅଞ୍ଚଳରେ ବିଭିନ୍ନ କାମଧନ୍ଦାରେ ନିୟୋଜିତ ଥାଆନ୍ତି । ଅବସର ବିନୋଦନ ନିମନ୍ତେ କାର୍ଲଲାଇଲ ଠାରେ ସେମାନେ ସ୍ଥାପନ କରିଛନ୍ତି ଏକ କ୍ଲବ । ଏହି କ୍ଲବଟି ୟୁକ୍ରେ ନିଅନ୍ କ୍ଲବ ନାମରେ ପରିଚିତ ।

କ୍ଲବର ଆୟ ବଢ଼ାଇବା ନିମନ୍ତେ ସେମାନେ କ୍ଲବର କେତୋଟି କୋଠରୀକୁ ସାଧାରଣତଃ ଭଡା ଦେଇଥାନ୍ତି । କାର୍ଲଲାଇଲରେ ଆମର ରହଣି ନିମନ୍ତେ ଏହି କ୍ଲବର ତିନୋଟି ରୁମ୍ ଆମ ପାଇଁ ଭଡା ନିଆଯାଇଥିଲା ।

ଆମେ ପହଞ୍ଚିଲା ବେଳକୁ କ୍ଲବଟି ଭିତର ପଟୁ ବନ୍ଦ ଥିଲା । ସତେ ଯେମିତି ସେଠି କେହି ରହୁ ନାହାନ୍ତି ।

କବାଟରେ ବାରମ୍ବାର ଶବ୍ଦକଲେ ମଧ୍ୟ ଭିତରପଟୁ କୌଣସି ଉତ୍ତର ଆସିଲା ନାହିଁ ।

ତେଣୁ ତାହା କ୍ଲବକି ନୁହେଁ ଆମେ ସନ୍ଦେହରେ ପଡିଲୁ । କାରଣ କ୍ଲବଟିର କୌଣସି ସାଇନ୍‌ବୋର୍ଡ ନଥିଲା । ଆମକୁ ଯାହା କେବଳ ଟ୍ୟାକସି ଚାଳକ ସେଠାରେ ଛାଡି ଦେଇ ତାହା ୟୁକ୍ରେନିୟନ କ୍ଲବ ବୋଲି କହି ଚାଲି ଯାଇଥିଲେ ।

ବାହାରେ କିଛି ସମୟ ଠିଆ ହୋଇ ରହିଲୁ । ପାଗ ଅତିଶୟ ଖରାପଥିଲା । ତୁହାକୁ ତୁହା ଥଣ୍ଡା ପବନ ବହିଯାଉଥାଏ । ତୁଷାରପାତ ଲାଗି ରହିଥାଏ । ଅତିଶୟ ଥଣ୍ଡାରେ ଆମ ଗୋଡ ହାତ ଥରିବାକୁ ଲାଗିଲା । ଆମେ ଯେଉଁ ଶୀତ ପୋଷାକ ପିନ୍ଧିଥିଲୁ ତାହା ଆମ ଦେହର ତାପ (temperature) ରଖିବାକୁ ଯଥେଷ୍ଟ ନଥିଲା ।

ଅତି ବ୍ୟସ୍ତରେ ଆମେ ପଦାକୁ ବାହାରି ଆସିଲୁ ।

ଜଣେ ପଥଚାରୀଙ୍କୁ ପଚାରିଲୁ, "ଏହା କ'ଣ ୟୁକ୍ରେନିୟନ କ୍ଲବ ?"

ସେ ହଁ' କହିଲେ ।

ଆମେ ପୁଣି କ୍ଲବଟିର ଦ୍ୱାର ଦେଶର ପୂର୍ବଠାରୁ ଅଧିକ ଖଟ୍ ଖଟ୍ ଶବ୍ଦ କଲୁ । ଜଣେ ପୃଥୁଳକାୟ ଗେଡା ବ୍ୟକ୍ତି କ୍ଲବଟିର ଦ୍ୱାର ଖୋଲି ବାହାରି ଆସିଲେ ।

ଆମକୁ ଦେଖି ହସି ହସି କହିଲେ, "ଓଃ ! ଆପଣମାନେ !! ଆସନ୍ତୁ, ଆସନ୍ତୁ । ଆପଣମାନେ ଟିକିଏ ଶୀଘ୍ର ଆସିଗଲେ । କ୍ଲବଟିର ଉପର ମହଲାରେ ଥିବା କୋଠରୀ ଗୁଡିକରେ ମୁଁ ରଙ୍ଗ ଦେଉଥିଲି । ତେଣୁ ଆପଣମାନଙ୍କ ଶବ୍ଦ ସହଜରେ ଶୁଣି ପାରୁ ନଥିଲି । ଦୟାକରି କ୍ଷମା ଦିଅନ୍ତୁ ।"

ଦ୍ୱାର ଦେଶ ଖୋଲାହେବା ମାତ୍ରେ ଆମେ ତିନିଜଣ ବନ୍ଧୁ ସେହି ଭଦ୍ରବ୍ୟକ୍ତିଙ୍କ ସହିତ କ୍ଲବର ଡ୍ରଇଂରୁମ୍‌ରେ ବସି ପଡିଲୁ । ରୁମଟି ଉଷୁମଥିଲା । ଆମକୁ ଦୂରଯାତ୍ରା ପରେ ଟିକିଏ ଆଶ୍ୱସ୍ତି ମିଳିଲା ।

କିଛି ସମୟ ପରେ ୟୁକ୍ରେନିୟନ କ୍ଲବର ସେହି ଭଦ୍ରବ୍ୟକ୍ତି ଜଣଙ୍କ ତାଙ୍କର ପରିଚୟ ଆପେ ଆପେ ଦେଲେ । ସେ କହିଲେ, "ମୁଁ ହେଉଛି ମିଷ୍ଟର ୱାଲଟର । ଏହି କ୍ଲବଟିର କେୟାର ଟେକର ।"

ତା'ପରେ ଆମେ ଆମର ପରିଚୟ ତାଙ୍କୁ ପ୍ରଦାନ କଲୁ ।

ୱାଲ୍‌ଟର ଟିକିଏ ପରେ ଦ୍ୱାର ପାଖରେ ଥିବା ଏକ ଟେଲିଫୋନ ପାଖକୁ ଗଲେ । ସେଠାରୁ ସେ ଆମେ ଆସି ସେଠାରେ ପହଞ୍ଚିଥିବା କଥା କ୍ଲବଟିର ସଭାପତିଙ୍କୁ ଜଣାଇଲେ ।

କିଛି ସମୟପରେ କ୍ଲବର ସଭାପତି ଆସି ଆମକୁ ତାଙ୍କଗାଡିରେ ଆମ ଶିକ୍ଷାନୁଷ୍ଠାନ ଏଦେନ୍ ଭିଜେନ୍ ଷ୍ଟୁଡିଓକୁ ନେଇଗଲେ ।



# ଏଡେନ୍‌ଭିଜନ ଷ୍ଟୁଡିଓରେ ପ୍ରଥମ ଦିନ : ପ୍ରଥମ ଅନୁଭୂତି

ଏଡେନ୍ ଭିଜନ ଶିକ୍ଷାକେନ୍ଦ୍ରରେ ପହଞ୍ଚିଲା ବେଳକୁ ଦିନପ୍ରାୟ ଚାରିଟା ହୋଇଥାଏ । ଶିକ୍ଷା କେନ୍ଦ୍ରର ସେକ୍ରେଟେରୀ ମିସେସ୍ କ୍ରିଷ୍ଟାଇନ୍ ରୋଗରସନ ଆମ୍ଭମାନଙ୍କୁ ଦେଖି କହିଲେ, "ଆପଣମାନଙ୍କୁ ଏଠାକୁ ଆଣିବାକୁ ଶିକ୍ଷା କେନ୍ଦ୍ରର ଶିକ୍ଷାଦାତା ଓ ଅନ୍ୟାନ୍ୟ କର୍ମଚାରୀମାନେ କାର୍‌ଲାଇଲ ଷ୍ଟେସନ ଯାଇଛନ୍ତି ।"

ତା'ପରେ ସେ ଆମ୍ଭମାନଙ୍କୁ ପଚାରିଲେ, "ଆପଣମାନେ ଚା' ନା କଫି ଚାହାନ୍ତି ?

ସେତେବେଳକୁ ଆମ୍ଭମାନଙ୍କ ଦେହ ଶୀତର ଆତିଶଯ୍ୟରେ ଥରୁଥାଏ । ଆମ୍ଭେମାନେ ସଙ୍ଗେ ସଙ୍ଗେ କହିଲୁ, "ଆମର ଚା' ହେଲେ  ଚଳିବ"

ଅଳ୍ପ ସମୟପରେ ମିସେସ୍ ରୋଗରସନ୍ ଆମକୁ ଚା ଆଣିଦେଲେ ।

ଚା' କପଟି ସରୁ ନ ସରୁଣୁ ଆମେ ବସିଥିବା ସ୍ଥାନରେ ଜଣେ ଭଦ୍ର ମହିଳା, ଦୁଇଜଣ ଭଦ୍ରବ୍ୟକ୍ତି ଆସି ଆମକୁ ସ୍ୱାଗତ ଜଣେଇଲେ । କହିଲେ, "ଆପଣମାନେ ଆଗରୁ ଚାଲିଆସିଲେ । ଆମେ ଆପଣମାନଙ୍କୁ ଷ୍ଟେସନରେ ଖୋଜୁଥିଲୁ ।"

ନିର୍ଦ୍ଦିଷ୍ଟ ଗାଡିରେ ଆମକୁ କାହିଁକି ୟୁଷ୍ଟନ ଷ୍ଟେସନରୁ କାର୍ଲଲାଇଲ ଆସିବାକୁ କୁହାଯାଇଥିଲା, ତାହା ମୁଁ ସ୍ପଷ୍ଟ ଭାବରେ ବୁଝି ପାରିଲି । ହୁଏତ ଆମେ ଦୁଇଘଣ୍ଟା ଡେରିକରି ପରବର୍ତ୍ତୀ ଟ୍ରେନ୍‌ରେ କାର୍ଲଲାଇଲ ଆସିଥିଲେ ୟୁକ୍ରେନିୟନ କ୍ଲବରେ ପହଞ୍ଚି ଯେପରି ହଟାହଟା ହେଲୁ ସେତିକ ହୋଇ ନଥାନ୍ତୁ । ପୁଣି ଆମକୁ ଆମ ଗନ୍ତବ୍ୟସ୍ଥାନକୁ ଅଯଥା ଖର୍ଚ୍ଚାନ୍ତ ହୋଇ ଆସିବାକୁ ପଡିନଥାନ୍ତା ।

କାର୍ଲଲାଇଲ୍ ଷ୍ଟେସନକୁ ଆମକୁ ପାଛୋଟି ଆଣିବାକୁ ଯାଇଥିଲେ ଆମର ଶିକ୍ଷା ଦାୟିତ୍ୱ ନେଇଥିବା ଟିଉଟର ଗାୟ ଫିଦରସନ୍, ଶିକ୍ଷାକେନ୍ଦ୍ରର ଅଭ୍ୟର୍ଥନାକାରୀ (Receptionist) ଜନ କକ୍‌ସ, ଶିକ୍ଷାକେନ୍ଦ୍ର ତଥା ଷ୍ଟୁଡିଓର ଇଂଜିନିୟର ରବର୍ଟ ଜନସନ୍ ଓ ଭିଡିଓ ଏଡିଟର (Editor) ଆଣ୍ଡି ଫ୍ରଡା । ସେମାନଙ୍କ ସହିତ ଆମ ପୂର୍ବରୁ ଶିକ୍ଷା ନେଉଥିବା ବଙ୍ଗଳାଦେଶର ଜଣେ ଶିକ୍ଷାର୍ଥୀ ମଧ୍ୟ । ତାଙ୍କର ନାମଥିଲା ଜିଆ ରହେମାନ ।

ଆମକୁ ସେଠାରେ ଦେଖି ସବୁଠାରୁ ବେଶୀ ଖୁସିଥିଲେ ବଙ୍ଗଳାଦେଶର ବନ୍ଧୁ ଜିଆ ରହେମାନ୍ । ସେ ୟୁକ୍ରେନିୟନ କ୍ଲବରେ ଏକୁଟିଆ ରହୁଥିଲେ । ପୂର୍ବରୁ ତାଙ୍କ ସହିତ ଗଲଫ ଦେଶର ତିନି ଚାରିଜଣ ବନ୍ଧୁ ରହୁଥିଲେ । ସେମାନେ କିଛିଦିନ ଆଗରୁ ସେମାନଙ୍କ ପାଠ୍ୟକ୍ରମ ସରିବା ଯୋଗୁଁ ୟୁକ୍ରେନିୟନ୍ କ୍ଲବ ଛାଡି ନିଜ ଦେଶ ଅଭିମୁଖେ ପ୍ରତ୍ୟାବର୍ତ୍ତନ କରିଥିଲେ । ଯାହାଫଳରେ ବଙ୍ଗଳା ଦେଶର ଶିକ୍ଷାର୍ଥୀ ଜିଆ ରହେମାନ ସେଠାରେ ଏକୁଟିଆ ହୋଇ ଯାଇଥିଲେ । ନିଜର ଖୁସି ବର୍ଣ୍ଣନା କରିବାକୁ ଯାଇଁ ସେ କହିବାକୁ ଆରମ୍ଭ କଲେ, " ମୁଁ କିଏ ? ଆପଣମାନେ କିଏ ? ବଙ୍ଗଳା ଦେଶ କିଏ ପୁଣି ଭାରତ କିଏ ? ପୁଣି ମୋର ବହୁବନ୍ଧୁ ବାନ୍ଧବ ଆପଣଙ୍କ ପଶ୍ଚିମ ବଙ୍ଗରେ ଅଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ତ ଆମ ସମସ୍ତଙ୍କର କବି ।"

ଏମିତି କହି ବଙ୍ଗଳାଦେଶୀ ବନ୍ଧୁ ଆମ୍ଭମାନଙ୍କ ସହିତ ଭାବଗତ ଏକତା ପ୍ରତିଷ୍ଠା କିରବାକୁ ଚେଷ୍ଟା କରିଥିଲେ । ମାତ୍ର ସେହି ଭାବଗତ ଏକତା କେତେଦୂର ଆପଣାର ଥିଲା ତାହା ଜାଣିବାକୁ ଟିକିଏ ସମୟ ଲାଗିଲା । ଉପରେ ଉପରେ ସେ ଭାରତୀୟମାନଙ୍କୁ ଭଲ ପାଉଛନ୍ତି ବୋଲି କହିଲେ ସିନା; ମାତ୍ର ତାଙ୍କର ମନୋଭାବ ଆମଦେଶ ପ୍ରତି ସେତେ ନମନୀୟ ନଥିଲା । ଏହା ଆମେ ପରେ ତାଙ୍କର କେତେକ ଆଚରଣରୁ ଜାଣିଲୁ ।



# ୟୁକ୍ରେନିୟନ କ୍ଲବର କେୟାର ଟେକର : ୱାଲଟର

ଆମେ ରହିଥିବା ୟୁକ୍ରେନିୟନ କ୍ଲବର କେୟାର ଟେକର ୱାଲଟର ଜଣେ ଖୁସି ମିଜାଜର ଲୋକ ଥିଲେ । କଥା କଥାକେ ରହସ୍ୟ ସୃଷ୍ଟି କରିବା ଥିଲା ତାଙ୍କର ଅଭ୍ୟାସ । ଏହାଦ୍ୱାରା ଆମେ ମଧ୍ୟ ମାନସିକ ଶାନ୍ତି ପାଉଥିଲୁ । ଘର କଥା ସହଜରେ ଭୁଲି ଯାଉଥିଲୁ ।

ୱାଲଟରଙ୍କ ବୟସ ଆମଠାରୁ ଯଥେଷ୍ଟ ଅଧିକ ଥିଲା । ସେ ମୋତେ ଓ ଅନ୍ୟମାନଙ୍କୁ ଓଃ ! ! ମାଇଁ ଚାଇଲ୍ଡ (Oh My child) ବୋଲି ସମ୍ବୋଧନ କରୁଥିଲେ । ଯେତେବେଳେ ଆମେ ଚିନ୍ତିତ ହେବାରେ ଦେଖିଲେ ସେ ତାଙ୍କ ଜୀବନର ମଜା କଥା ଓ କାହାଣୀ କହୁଥିଲେ । ଯେମିତି ଆମେ ଆମର ଚିନ୍ତା ଭୁଲିଯିବୁ ।

ୱାଲଟରଙ୍କ ଜୀବନର କଥା ଓ କାହାଣୀ ଶୁଣିବାକୁ ଖୁବ ଭଲ ଲାଗୁଥିଲା । ସେଥିରେ ତାଙ୍କ ଜୀବନର ଦୀର୍ଘ ଅଭିଜ୍ଞତା ଓ ଅନୁଭୂତି ଭରି ରହିଥିଲା । ସେ ଗୁଡିକ ଆମପାଇଁ ମଧ୍ୟ ଖୁବ୍ ଶିକ୍ଷଣୀୟ ହୋଇଥିଲା ।

ଦିନେ ମୁଁ ୱାଲଟରଙ୍କୁ କହିଲି, "ୱାଲଟର, ଆଜି ରୋଷେଇ କରି ହେବନି । ବଡ କଷ୍ଟ ଲାଗୁଛି ।"

ମୋ କଥା ଶୁଣି ସେ ସଙ୍ଗେ ସଙ୍ଗେ କହିଲେ, "ଓଃ ମାଇଁ ଚାଇଲଡ୍, ଏ ଦେଶରେ ରୋଷେଇ କରି ନପାରି କେହି ଉପବାସରେ ରହନ୍ତି ନାହିଁ । ବଜାରକୁ ଯାଅ, ରନ୍ଧା ଖାଦ୍ୟ ପୁଡିଆ ମିଳୁଛି । କିଣି ଆଣ ଓ ଖାଅ ।"

ୱାଲଟରଙ୍କ କଥାମାନି ମୁଁ ନିକଟସ୍ଥ ଏକ ଦୋକାନକୁ ଗଲି । ପନିପରିବାର ରନ୍ଧା ଖାଦ୍ୟ ଆଣିଲି ।

ସେଦିନ କାର୍ଲଲାଇଲ ସହରର ରନ୍ଧାଖାଦ୍ୟରେ ମୋର ରାତି ଭୋଜନ ହୋଇଥିଲା ।

# ମେୟରଙ୍କ ଅତିଥ୍ୟ

ଆମଦେଶର ସହରାଞ୍ଚଳର ଶାସନ ପାଇଁ ଲୋକ ସଂଖ୍ୟାକୁ ଚାହିଁ ଆବଶ୍ୟକତା ଅନୁସାରେ ମୁନିସ ପାଲଟି, ପୌରପାଳିକା, ନିଗମ ଆଦି ସ୍ୱାୟତ୍ତଶାସନ ସଂସ୍ଥା ଥିଲା ଭଳି ବିଲାତର ସହରାଞ୍ଚଳର ଶାସନ ନିମନ୍ତେ ସେହିପରି ବିଭିନ୍ନ ସଂସ୍ଥା ଅଛି । କାର୍ଲଲାଇଲର ସ୍ୱାୟତ୍ତଶାସନ ସଂସ୍ଥା "କାଉଣ୍ଟି କାଉନିସିଲ୍" (County Council) ନାମରେ ପରିଚିତ ।

କାଉଣ୍ଟି କାଉନସିଲ୍‌ର ମୁଖ୍ୟଙ୍କୁ ମେୟର କୁହାଯାଏ ।

କାର୍ଲଲାଇଲରେ ପହଞ୍ଚିବା ପରେ ଆମକୁ ଆମ ଶିକ୍ଷାନୁଷ୍ଠାନର ନିର୍ଦ୍ଦେଶକ କହିଲେ ଯେ ସାଧାରଣତଃ ସହରକୁ କୌଣସି ବାହାର ଦେଶର ଲୋକ ଆସିଲେ ସହରର ମୁଖ୍ୟଙ୍କୁ ସାକ୍ଷାତ କରିବାର ପରମ୍ପରା ଅଛି । କାରଣ ତାଙ୍କର ଭଲ ମନ୍ଦ ପାଇଁ ମେୟରଙ୍କୁ ପଚରାଯିବାର ବିଧିବିଧାନ ରହିଛି । ଅର୍ଥାତ୍ କାର୍ଲଲାଇଲରେ ଆମ ରହଣି କାଳରେ ସେ ହେବେ ଆମର ଅଭିଭାବକ ।

ଏହି ଅଭିଭାବକଙ୍କୁ ଦେଖା କରିବାକୁ ଜାନୁୟାରୀ ମାସ ୧୫ ତାରିଖ ଧାର୍ଯ୍ୟ କରାଯାଇଥାଏ । ସେଦିନ ଆମେ ଯଥା ସମୟରେ ଆମ ଶିକ୍ଷାନୁଷ୍ଠାନରେ ପହଞ୍ଚିଲୁ । ସେଠାରେ ଏହାର ନିର୍ଦ୍ଦେଶକ ରାୟ ଥମ୍ପସନ ଉପସ୍ଥିତ ଥିଲେ । ଆମର ମେୟରଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଦିନ ୧୧ଟା ସ୍ଥିର କରାଯାଇଥାଏ ।

ରାୟ ଥମ୍ପସନ ଆମକୁ ମେୟରଙ୍କ ବିଷୟରେ କିଛି ପ୍ରାକ୍-ସୂଚନା ପ୍ରଦାନ କଲେ ।

ସେ କହିଲେ ଯେ ମେୟର ହେଉଛନ୍ତି ଜଣେ ମିଷ୍ଟଭାଷୀ, ଶାନ୍ତ ସ୍ୱଭାବର ମଣିଷ । ଅତିଥି ପରାୟଣ ମଧ୍ୟ । ତାଙ୍କୁ ସମ୍ବୋଧନ କଲାବେଳେ 'ମିଷ୍ଟର ମେୟର' ବୋଲି ସମ୍ବୋଧନ କରିବାକୁ ରାୟ ଥମ୍ପସନ କହିଥିଲେ ।

ଯଥାସମୟରେ ରାୟ ଥମ୍ପସନଙ୍କ ସହିତ ଆମେ ମେୟରଙ୍କ କାର୍ଯ୍ୟାଳୟରେ ପହଞ୍ଚିଲୁ । ଆମର ଆସିବା ଖବର ଜାଣି ମେୟର ସଙ୍ଗେ ସଙ୍ଗେ ଆମକୁ ସାକ୍ଷାତ କରିବାକୁ ଅନୁମତି ଦେଲେ ।



ମେୟର ବସୁଥିବା କୋଠରୀ ପାଖରେ ପହଞ୍ଚିବା କ୍ଷଣି ମେୟର ନିଜେ ଦ୍ୱାର ଖୋଲି ଆମକୁ ସ୍ୱାଗତ ଜଣାଇଲେ । ତାଙ୍କ ପ୍ରକୋଷ୍ଠରେ ଆମକୁ ବସାଇ ନିଜେ ଠିଆ ହୋଇ ହସି ହସି ଆମ ସହିତ ତାଙ୍କ ସ୍ୱଭାବ ସୁଲଭ ସ୍ୱରରେ ବାର୍ତ୍ତାଳାପ ଆରମ୍ଭ କଲେ ।

ପ୍ରଥମେ ସେ ତାଙ୍କର ରାଜନୈତିକ ଦଳ ଓ ରାଜନୈତିକ ଜୀବନ ସଂପର୍କରେ କିଛି ସୂଚନା ନେଲେ । ତା'ପରେ କାଉଣ୍ଟି କାଉନ୍‌ସିଲର କାର୍ଯ୍ୟ ଓ ତାଙ୍କ କ୍ଷମତା ସଂପର୍କରେ ବର୍ଣ୍ଣନା କଲେ ।

ମଝିରେ ମଝିରେ ଆମ୍ଭେମାନେ ବିଭିନ୍ନ ବିଷୟରେ ତାଙ୍କୁ ପ୍ରଶ୍ନମାନ ପଚାରୁଥିଲୁ । ସେ ହସି ହସି ସେଗୁଡିକର ଉତ୍ତର ଦେଉଥିଲେ ।

କିଛି ସମୟ ପରେ ମେୟର ଆମରାଜ୍ୟ ଓ ଦେଶର ସଂସ୍କୃତି ସଂପର୍କରେ ମଧ କେତେକ କଥା କହିଲେ ।

ଆଳାପ ଆଲୋଚନା ମଧ୍ୟରେ ମେୟର ତାଙ୍କ ବସିବାସ୍ଥାନ ନିକଟରେ ଥୁଆ ହୋଇଥିବା କାଚ ଆଲମିରାଟିକୁ ଖୋଲିଲେ । ସେଥିରେ ବିଭିନ୍ନ ପ୍ରକାରର ପାନୀୟଥିଲା । ସେ ଆମ ଟିପୟ ଉପରେ କୋକାକୋଲା ଲେମ୍ବୁରସ ଓ ଭାରତୀୟ ସୋଡା ଗ୍ଲାସରେ ପୂରାଇ ଥୋଇଲେ ।

ଆମେ ଆମ ରୁଚି ଅନୁସାରେ ସେହି ସବୁ ପାନୀୟ ପିଇଲୁ ।

ବଡ ଆଶ୍ଚର୍ଯ୍ୟର କଥାଯେ ତାଙ୍କୁ ଏହିସବୁ ପାନୀୟ ଆଣି ଆମ ନିକଟରେ ଥୋଇବା ପାଇଁ କୌଣସି କର୍ମଚାରୀ ସାହାଯ୍ୟ କରିବାକୁ ନଥିଲେ ।

ମେୟରଙ୍କ ଗଳାରେ ଏକ ବିରାଟ ସୁନାର ହାର ଶୋଭା ପାଉଥିଲା । ସେହି ସୁନ୍ଦର ହାରଟିକୁ ଦେଖି ଆମ ମଧ୍ୟରୁ ଜଣେ ବନ୍ଧୁ ପଚାରିଲେ, "ମିଷ୍ଟରେ ମେୟର ! ଆପଣ କ'ଣ ସବୁବେଳେ ଏପରି ଏକ ବିରାଟ ହାର ପିନ୍ଧଥା'ନ୍ତି ।

ବନ୍ଧୁଙ୍କ ପ୍ରଶ୍ନଶୁଣି ମେୟର ସେହି ହାରଟି ଉପରେ ହାତ ବୁଲେଇ ଆଣ୍ଣୁ ଆଣ୍ଣୁ କହିଲେ, "ନା' ସବୁବେଳେ ମୁଁ ଏହି ହାର ପିନ୍ଧି ନ ଥାଏ । ଏହାର ସ୍ୱତନ୍ତ୍ର ଅନୁଷ୍ଠାନିକ ମର୍ଯ୍ୟାଦା ଅଛି । ଏହାକୁ ମୋ ପୂର୍ବର ମେୟରମାନେ ପିନ୍ଧୁଥିଲେ । ଏବେ ମେୟର ପଦବୀରେ ମୁଁ ଏହାକୁ ପିନ୍ଧୁଅଛି । ମୋ ପରେ ଯିଏ ମେୟର ପଦବୀ ଅଳଂକୃତ କରିବେ ସେ ମଧ ଏହି ହାରଟି ପିନ୍ଧିବେ ।"

ଆମେ ପଚାରିଲୁ "ଏହି ହାରଟିର ଓଜନ କେତେ ?

ସେ କହିଲେ, "ଏହାର ଓଜନ ପ୍ରାୟ ୩୦୦ ଗ୍ରାମ । ଆପଣଙ୍କ ଦେଶର ଓଜନରେ ଏହା ୩୦ ଭରି ପାଖା ପାଖି ହେବ ।"

ହାକହିଁ ମେୟର ତାଙ୍କ ଆସନ ଛାଡି ଠିଆ ହେଲେ । ଆମ୍ଭେମାନେ ମଧ୍ୟ ନିଜ ନିଜ ଆସନ ଛାଡି ଠିଆ ହେଲୁ ।

ମେୟର ତାଙ୍କ ଆଲିମିରା ପାଂଖକୁ ଗଲେ । ସେଥିରୁ କାର୍ଲଲାଇଲର ଗୋଟିଏ ସନ୍ତକ (Insignia) ବାହାର କରି ଆମକୁ ଉପହାର ସ୍ୱରୂପ ଦେଲେ ।

ଆମେ ମେୟରଙ୍କୁ ଅଭିବାଦନ ଜଣାଇ ସେଠାରୁ ବିଦାୟ ନେଲୁ ।

ପୁନଶ୍ଚ ଦେଖା ହେବ ବୋଲି ମେୟର କହିଲେ ।

ସେଦିନ ମେୟରଙ୍କ ସହିତ ଆମର ପ୍ରାୟ ଚାଳିଶ ମିନିଟ୍ ପର୍ଯ୍ୟନ୍ତ ଆଳାପ-ଆଲୋଚନା ହୋଇଥିଲା ।

ତାଙ୍କର କଥାବାର୍ତ୍ତା ଗତାନୁଗତିକ ନ ହୋଇ ଏତେ ଅନ୍ତରଙ୍ଗ ହୋଇଥିଲା ଯେ ତାହା ଆମେ ଭୁଲି ପାରୁଲୁ ନାହିଁ ।



# ରାୟ ଥମ୍ପସନଙ୍କ ନିମନ୍ତ୍ରଣ

ଆମେ ୟୁକ୍ରେନିୟନ୍ କ୍ଲବରେ ଥିଲାବେଳେ ଦିନେ ସକାଳେ ସେଠାରେ ଆମ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ ରାୟ ଥମ୍ପସନ ଆସିଲେ । ସେ ଆମକୁ ସେଦିନ ଚିରାଚରିତଭାବେ ଗୁଡ ମର୍ଣ୍ଣିଂ (Good Morning) ନକହି ନମସ୍କାର ! ନମସ୍କାର !! କହି ଅଭିଭାଦନ ଜଣାଇଲେ ।

ଜଣେ ସାହେବଙ୍କ ପାଟିରୁ ଆମ ଭାଷାରେ 'ନମସ୍କାର' ଶୁଣି ଭାରି ଖୁସି ଲାଗିଲା ।

ଆମେ କିପରି ଅଛୁ ବୋଲି ସେ ପଚାରିଲେ । ଆମ ଭଲମନ୍ଦ ବୁଝି ସାରିଲା ପରେ ସେ କହିଲେ, "ଆଜି ରାତିରେ ଆମଘରକୁ ଯିବାପାଇଁ ଆପଣମାନଙ୍କୁ ନିମନ୍ତ୍ରଣ ରହିଲା । ମୋ ସ୍ତ୍ରୀ ମୋତେ ବାରମ୍ବାର ଆମ ଘରକୁ ଆପଣମାନଙ୍କୁ ନିମନ୍ତ୍ରଣ କରିବାକୁ କହି ଆସୁଛନ୍ତି । ମୁଁ ହେଳାରେ ହେଳାରେ ରହିଯାଇଥିଲି । ଆଜି ସେ ଜିଦ୍ ଧରିଲେ । ସେଥିପାଇଁ ଆସିଲି ।"

ରାୟ ଥମ୍ପସନଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ଏପରି ସ୍ୱୀକାରୋକ୍ତି ଆମକୁ ଖୁବ୍ ଖୁସି ଲାଗିଲା ।

ସେ କହିବା ଅନୁଯାୟୀ ସନ୍ଧ୍ୟାବେଳେ ଆମ କ୍ଲବରେ ଆସି ପହଞ୍ଚିଲେ । ତାଙ୍କ ଗାଡିରେ ଆମକୁ ତାଙ୍କ ଘରକୁ ନେଇଗଲେ ।

ଆମେ ପହଞ୍ଚିବା କ୍ଷଣି ତାଙ୍କର ମିସେସ୍ ଓ ତିନିଝିଅ ଆମକୁ ହସି ହସି ସ୍ୱାଗତ ଜଣାଇଲେ ।

ଡ୍ରଇଂରୁମ୍‌ର ସୋଫାରେ ଆମେ ବସିଲୁ । ଆମ ସହିତ ରାୟ ଥମ୍ପସନ୍ ମିସେସ୍ ଥମ୍ପସନ ଓ ତାଙ୍କର ତିନିଝିଅ ମଧ୍ୟ ବସିଲେ ।

ରାୟ ଥମ୍ପସନ ତାଙ୍କର ତିନିଝିଅଙ୍କ ସହିତ ଆମର ପରିଚୟ କରାଇ ଦେଲେ । ପରେ ସେ ତାଙ୍କ ତିନି ଝିଅଙ୍କର ନାମ ମଧ୍ୟ କହିଲେ । ବଡ ଝିଅଙ୍କର ନାମ ଜେମା (Jema) ଥିଲା ।

'ଜେମା' ନାମ ସହିତ ଆମ ଭାଷାର ସଂପର୍କ ଅଛି । ଆମ ଦେଶ ତଥା ରାଜ୍ୟର ମଧ୍ୟ କେହି କେହି ତାଙ୍କର ଝିଅକୁ ଜେମା ବୋଲି ଡାକିଥାନ୍ତି । ତେଣୁ ଆମେ ତାଙ୍କୁ କହିଲୁ ଆମ ଦେଶରେ ମଧ୍ୟ ଝିଅମାନଙ୍କର ନାମ ଜେମା ଅଛି । ଜେମା ଶବ୍ଦର ଅର୍ଥ ରାଜକୁମାରୀ (Princess) ।

ରାଜକୁମାରୀ ଶବ୍ଦ ଶୁଣି ମିସେସ ଥମ୍ପସନ ଓ ରାୟ ଥମ୍ପସନ ବିଶେଷ ଖୁସି ହେଲେ ।

ତିନିଝିଅ ମଧ୍ୟ ଏକାଥରକେ ହସି ଉଠିଲେ ।

ତା'ପରେ ଆମେ ତାଙ୍କ ପାଇଁ ନେଇଥିବା କିଛି ଉପହାରଗୁଡିକୁ ସୋଫା ଉପରେ ରଖିଲୁ ।

ସେହି ଉପହାରମାନଙ୍କ ମଧ୍ୟରେ ଥିଲା ପିପିଲିର ଚାନ୍ଦୁଆ, ମଇଁଷି ଶିଙ୍ଗରେ ତିଆରି ବିଭିନ୍ନ ପଶୁ ପକ୍ଷୀଙ୍କ ନମୂନା ଓ ସମ୍ବଲପୁରୀ ରୁମାଲ ।

ମିସେସ ଥମ୍ପସନ, ରାୟ ଥମ୍ପସନ ଓ ତାଙ୍କର ପିଲାମାନେ ସେହି ଉପହାର ସବୁ ଦେଖି ବିଶେଷ ଖୁସି ହେଲେ ।

ସେଥିପାଇଁ ଆମ୍ଭମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଇଲେ ।

କିଛି ସମୟପରେ ରାୟ ଥମ୍ପସନ ତାଙ୍କର ଝିଅମାନଙ୍କୁ କହିଲେ, "ମୋର ଏମାନଙ୍କ ସହିତ କିଛି ଘରୋଇ କଥାବର୍ତ୍ତା ଅଛି । ତୁମ୍ଭେମାନେ ଅନ୍ୟ ଘରକୁ ଟିକିଏ ଯିବ କି ?"

ତାଙ୍କ ପାଟିରୁ କଥା ସରୁ ନସରୁଣୁ ତିନିଝିଅ ବିନାଦ୍ୱିଧାରେ ସେଠାରୁ ଉଠି ଘର ଭିତରକୁ ଚାଲିଗଲେ ।

ତା'ପରେ ରାୟ ଥମ୍ପସନ ଆମକୁ ଆମ ଦେଶର ଝିଅମାନଙ୍କର ସାମାଜିକ ସ୍ଥିତି ଓ ସମସ୍ୟା ସଂପର୍କରେ ବିଭିନ୍ନ ପ୍ରଶ୍ନ ପଚାରି ବିଭିନ୍ନ କଥା ସଂପର୍କରେ ପଚାରିଥିଲେ ।

ଆମେ ତାଙ୍କୁ ତାଙ୍କ ଦେଶରେ ଯୌତୁକ ପ୍ରଥା ଅଛି କି ନାହିଁ ପଚାରିଥିଲୁ ।

ଆମ ପ୍ରଶ୍ନ ଶୁଣି ସେ ଟିକିଏ ହସିଲେ । କହିଲେ, "ହଁ, ଆମ ଦେଶରେ ମଧ୍ୟ ଅଛି, ଉଣା ଅଧିକେ ଏହି ପ୍ରଥା ପୃଥିବୀର ସବୁ ଦେଶରେ କିଛି ନା କିଛି ଅଛି । ଯାହା କେବଳ ଦବାନବାର ଧରାବନ୍ଧା ପାର୍ଥକ୍ୟ ମଧ୍ୟରେ ସୀମାବଦ୍ଧ ଅଛି ।"

ଟିକିଏ ରହିଯାଇ ପୁଣି ସେ ଆରମ୍ଭ କଲେ, " ମୋର ତିନୋଟି ଝିଅ ଅଛନ୍ତି । ମୁଁ ମଧ୍ୟ ସେମାନଙ୍କୁ କିପରି ଭଲରେ ଭଲରେ ପରଘରକୁ ବିଦା କରିବି ସେ କଥା ଚିନ୍ତା କରୁଛି । ଆପଣଙ୍କ ଦେଶରେ ଯୌତୁକ ପ୍ରଥା ସିନା ଅଛି; ମାତ୍ର ଆମଦେଶରେ ଉପହାର ପ୍ରଥା ଅଛି । ଆମେ ଉପହାର ସ୍ୱରୂପ କିଛି ଜିନିଷପତ୍ର ଝିଅକୁ ବିଭାହେବା ସମୟରେ ଦେଉଥାଉ ।"

ମୁଁ ତାଙ୍କୁ ପ୍ରଶ୍ନକଲି "ଆପଣଙ୍କ ଦେଶରେ ବିବାହ ସମୟରେ ବର କନ୍ୟାଙ୍କ ଜାତି ପ୍ରସଙ୍ଗ ବିବେଚନା କରାଯାଏ କି ?"

ଉତ୍ତରରେ ସେ କହିଲେ, "ହଁ, ସେହି ପଶ୍ନ ମଧ୍ୟ ଉଠିଥାଏ । ଆପଣମାନେ ମୋ ନିଜର ଉଦାହରଣ ମଧ୍ୟ ଦେଇପାରନ୍ତି । ମୁଁ ଜାତିରେ ଥିଲି ପ୍ରୋଟେଷ୍ଟାଣ୍ଟ ଅର୍ଥାତ୍ ପୋପ୍‌ଙ୍କ ନୀତିନିୟମ ଓ ପୂଜା ପଦ୍ଧତିକୁ ବିରୋଧ କରୁଥିବା ଜାତିର ଲୋକ । ମାତ୍ର ମୋ ସ୍ତ୍ରୀ ମିସେସ୍ ଥମ୍ପସନ ଥିଲେ କାଥୋଲିକ ସଂପ୍ରଦାୟର ମହିଳା ଅର୍ଥାତ୍ ଧର୍ମଯାଜକ ବା ପୁରୋହିତ ଶ୍ରେଣୀର ମହିଳା । ଆମ ସମାଜରେ ଏହି ଶ୍ରେଣୀର ଲୋକମାନଙ୍କର ସ୍ଥାନ ଉଚ୍ଚରେ । ଏପରିକି ସେମାନେ ସମାଜରେ ଯାହା ଚାହୁଁଥିଲେ ତାହା କରିପାରୁଥିଲେ । ଗୋଟିଏ ସମୟରେ ପୋପଙ୍କ ସ୍ୱତନ୍ତ୍ର ଆଦେଶ ବଳରେ ଭାଇ ସହିତ ଭଉଣୀ ମଧ୍ୟ ବିବାହ ବନ୍ଧନରେ ବାନ୍ଧି ହୋଇ ପାରୁଥିଲେ ।"

ମୁଁ ଲକ୍ଷ୍ୟ କଲି ଏପରି ବର୍ଣ୍ଣନା କରିବା ସମୟରେ ରାୟ ଥମ୍ପସନ ଟିକିଏ ଭାବପ୍ରବଣ ହୋଇ ଉଠିଛନ୍ତି ।

ମନରେ ଟିକିଏ ସାହସ ସଞ୍ଚୟକରି ମୁଁ ରାୟ ଥମ୍ପସନଙ୍କୁ କହିଲି, "ଆଜ୍ଞା ! ଆପଣଙ୍କ ବିବାହ ସମୟରେ କ'ଣ କିଛି ସମସ୍ୟା ସୃଷ୍ଟି ହୋଇଥିଲା ?"

ରାୟ ଥମ୍ପସନ ଟିକିଏ ଗମ୍ଭୀର ହୋଇ କହିଲେ, "ହଁ, କେତେକ ନିକଟ ସଂପର୍କୀୟ ଲୋକ ଆମ ବିବାହକୁ ସାମାଜିକ ସ୍ୱୀକୃତି ଦେବାକୁ ଚାହୁଁ ନଥିଲେ ।"

କିଛି ସମୟପରେ ସେ ଟିକିଏ ପ୍ରକୃତିସ୍ଥ ହେଲେ । ପୁଣି ତାଙ୍କର ସ୍ୱଭାବ ସୁଲଭ ଭାଷାରେ ଆରମ୍ଭ କଲେ, "ଛାଡନ୍ତୁ ସେ କଥା । ଏବେବି ପରିଣତ ବୟସରେ ମିସେସ୍ ଥମ୍ପସନ ନିଜକୁ ମୋଠାରୁ ଜାତିରେ ଉଚ୍ଚ ବୋଲି ମନେ କରନ୍ତି । କ'ଣ ଏକଥା ସତ ନୁହେଁ ମାଡାମ୍ ?"

ମିସେସ୍ ଥମ୍ପସନ ହସି ହସି କହିଲେ, "ହେବନି କାହିଁକି ?"

ମିସେସ୍ ଥମ୍ପସନଙ୍କ କଥାଶୁଣି ଆମେ ସମସ୍ତେ ହସିଲୁ ।

ଆମ ସହିତ ରାୟ ଥମ୍ପସନ ମଧ୍ୟ ହସିଲେ ।

ତା'ପରେ ମିସେସ୍ ଥମ୍ପସନ କହିଲେ, "କ'ଣ ଏମିତି ଗପ ଚାଲିଥିବ ? ରାତି ବାରଟା ବାଜିଲାଣି ଯେ ?"

ଏହା କହି ସେ ରୋଷେଇ ଘରକୁ ଗଲେ । ଆମ୍ଭମାନଙ୍କ ପାଇଁ କିଛି ଖାଦ୍ୟ ଆଣିଲେ । ଆମେ ସମସ୍ତେ ହସଖୁସିରେ ସେହି ସବୁଖାଦ୍ୟ ଖାଇଲୁ । ଆମ ସହିତ ମଧ୍ୟ ତାଙ୍କର ତିନିଝିଅ ରାତ୍ର ଭୋଜନରେ ଯୋଗ ଦେଇଥିଲେ ।

ରାତି ଗୋଟାଏ ବେଳେ ଆମେ ସମସ୍ତେ ରାୟ ଥମ୍ପସନଙ୍କ ଆତିଥ୍ୟ କବଳରୁ ରକ୍ଷାପାଇଲୁ ।

ସେ ଆମକୁ ତାଙ୍କ ଗାଡିରେ ବସାଇ ଆଣି ୟୁକ୍ରେନିୟମ କ୍ଲବରେ ଛାଡିଦେଲେ ।

ଗଲାବେଳେ ହସି ହସି କହିଲେ, "ନମସ୍କାର ! ନମସ୍କାର !!"

ଆମ୍ଭେମାନେ ମଧ୍ୟ ତାଙ୍କୁ ପ୍ରତି ନମସ୍କାର ଜଣାଇଲୁ ।

ରାୟ ଥମ୍ପସନଙ୍କ ଆମପ୍ରତି ନମସ୍କାର ଆମ ଜାତିର ସଂସ୍କୃତି ପ୍ରତି ତାଙ୍କର ସମ୍ମାନ ଛଡା ଅନ୍ୟ କିଛି ନଥିଲା ।



# ସୁପର ମାର୍କେଟରେ ଆମେ

ଆମଦେଶରେ ଆମେ ସାଧାରଣତଃ ସଉଦା ପତ୍ର ନିମନ୍ତେ ହାଟ ଓ ବଜାରକୁ ଯାଇଥାଉ । ପୁନଶ୍ଚ ସହରରେ ଏପରି ପରିସ୍ଥିତି ହୁଏ ଯେ ଗୋଟିଏ ଦୋକାନରୁ ଆମେ କେବଳ ନିର୍ଦ୍ଦିଷ୍ଟ ଜିନିଷପତ୍ର ପାଇଥାଉ । ଅନ୍ୟ ଜିନିଷ କିଣିବାକୁ ଆମକୁ ଆଉ ଗୋଟିଏ ଦୋକାନକୁ ଯିବାକୁ ପଡେ ।




ବିଲାତ ଏକ ସମୃଦ୍ଧଦେଶ । ଏହାର ବିଭିନ୍ନ ସହରରେ ବଡ଼ବଡ଼ ମାର୍କେଟ ଅଛି । ଏହାକୁ ସୁପର ମାର୍କେଟ କହନ୍ତି । ଏବେ ଏପରି ସୁପର ମାର୍କେଟ୍ ଆମେ ଆମ ଦେଶରେ ଦେଖିବାକୁ ପାଉ ।

ସେହି ସବୁ ସୁପର ମାର୍କେଟରୁ ଆମ୍ଭେମାନେ ଆମ ଚାହିଦା ମୁତାବକ ଜିନିଷପତ୍ର ପାଇଥାଉ । ଗୋଟିଏ ମାର୍କେଟରୁ ଡାଲି, ଚାଉଳ, ବିସ୍କୁଟ, ଖେଳ ଜିନିଷ, ବହିପତ୍ର ଆଦି କିଣିବାକୁ ମିଳିଥାଏ ।

ମାତ୍ର ସେହି ସବୁ ଜିନିଷ ବିଲାତର ନୁହେଁ । ସେଗୁଡିକ ଅନ୍ୟ ଦେଶରୁ ଆସିଥାଏ । ଉଦାହରଣ ସ୍ୱରୂପ ସେଠାରେ ଆମେରିକାର ଚାଉଳ, କୋରିଆର ଛତା, ଜାପନର ଘଣ୍ଟା, ଟ୍ରାନ୍‌ଜିଷ୍ଟର ଓ ଅନ୍ୟାନ୍ୟ ଇଲୋକ୍‌ଟ୍ରୋନିକସ ଜିନିଷ, ଜର୍ମାନୀର ପେନ୍‌ସିଲ୍ ଓ ପେନ୍‌ସିଲ୍ କଟା କଳ ଆଦି ମିଳିଥାଏ । ସେହିପରି ଆମେ କିଣୁ ଥିବା ଲୁଗାପଟା ହକଙ୍ଗ, କୋରିଆ ଓ ଇଟାଲୀର ଥିଲା । ସେଓ ଓ ଅଙ୍ଗୁର ଗୁଡିକ ଫ୍ରାନସ ଦେଶର ଥିଲା । କେବଳ ଆଳୁ ବିଲାତର ଥିଲା, ମାତ୍ର ପିଆଜ କେନିଆର ଥିଲା ।

ମାତ୍ର ସବୁଠାରୁ ମଜା କଥା ହେଲା ଯେ ଆମେ କିଣୁଥିବା ଚା' ଆସାମର ଥିଲା । ଆସାମର ଚା' ବିଦେଶରେ ବିକ୍ରି ହେଉଥିବା ଜାଣି ଆମକୁ ବେଶ୍ ଖୁସି ଲାଗିଲା । ଏହି ଚା' ବିକ୍ରୟଦ୍ୱାରା ଆମଦେଶ ବୈଦେଶିକ ମୁଦ୍ରା ଅର୍ଜ୍ଜନ କରିବାର ସୁଯୋଗ ମଧ ପାଉଥିଲା ।

ଏହିସବୁ ସୁପର ମାର୍କେଟମାନ ବିଭିନ୍ନ ଦୋକାନ ସଂସ୍ଥାଦ୍ୱାରା ବିଲାତର ବିଭିନ୍ନ ସହରରେ ଖୋଲା ଯାଇଥାଏ । ସେହିସବୁ ସଂସ୍ଥା ମଧ୍ୟରୁ ମାର୍କ ଏବଂ ସ୍ପେନ୍‌ସର (Mark & Spencer), ଲିଟିଲ୍ ଉଡ୍‌ସ (Little Woods) ଆଦି ପ୍ରଧାନ ।

ବିଲାତରେ ସପ୍ତାହକୁ ଦୁଇଦିନ ଛୁଟି । ସାଧାରଣତଃ ଶନିବାର ଦିନ ଲୋକମାନେ ସେମାନଙ୍କ ସାପ୍ତାହିକ ସଉଦାପତ୍ର କରିବାକୁ ବଜାରକୁ ଯାଇଥାନ୍ତି । ସେଦିନ ଅନ୍ୟଦିନ ଅପେକ୍ଷା ପ୍ରଧାନ ପ୍ରଧାନ ବଜାର ସ୍ଥଳ ଓ ସୁପରମାର୍କେଟ ଗୁଡିକ ମୁଖରିତ ହୋଇ ଉଠେ । ଛୋଟ ପିଲାଙ୍କ ଠାରୁ ଆରମ୍ଭ କରି ବଡ ମଣିଷ ପର୍ଯ୍ୟନ୍ତ ସମସ୍ତଙ୍କ ଭିଡ ଏଠାରେ ଜମେ ।

ସୁପର ମାର୍କେଟରେ ବୁଲି ବୁଲି ଜିନିଷ କିଣିବାରେ କି ମଜାସତେ ! କିଣୁ କିଣୁ ଅଧିକ ଜିନିଷ ହାତରେ ହୋଇଗଲେ ଚିନ୍ତା କରିବାର ନାହିଁ । ଛୋଟବଡ ଟ୍ରଲି ମାନଙ୍କରେ ଜିନିଷ ରଖି ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯିବା ଖୁବ୍ ସହଜ ହୁଏ ।

ଏତଦ୍‌ବ୍ୟତୀତ ଗୋଟିଏ ଗୋଟିଏ ସୁପର ମାର୍କେଟ ତିନି ଚାରି ମହଲା ବିଶିଷ୍ଟ । ଉପର ମହାଲାକୁ ଯିବାକୁ ହେଲେ ପାହାଚ ଚଢି ଯିବାର କଷ୍ଟ ନାହିଁ ।

କେବଳ ଗୋଟିଏ ପାହଚରେ ଠିଆ ହେଲେ ହେଲା । ସେହି ପାହଚଟି ହେଉଛି ଯନ୍ତ୍ର ଚାଳିତ ପାହାଚ । ଠିଆ ହେଲାମାତ୍ରେ ଯନ୍ତ୍ର ଚ୍ଚଳିତ ପାହାଚଟି ଉପର ମାହଲାରେ ପହଞ୍ଚାଇ ଦିଏ ।

ଜିନିଷପତ୍ର ଧରି ପଦାକୁ ବାହାରିବା ପୂର୍ବରୁ ନିର୍ଦ୍ଦିଷ୍ଟ କାଉଣ୍ଟରରେ ପଇସାପତ୍ର ଦେବାକୁ ପଡେ । ପଇସା ପତ୍ର ମାଗିବାକୁ ପାଖକୁ କେହି ଆସିବେ ନାହିଁ । ସେହି ଦୋକାନରେ ଖୋଲାଥିବା କାଉଣ୍ଟର ପାଖରେ ଜିନିଷ ପତ୍ର ରଖିଦେଲେ, କାଉଣ୍ଟରରେ ଥିବା ବ୍ୟକ୍ତି ଜଣକ ହିସାବ ଯନ୍ତ୍ରରେ ସମୁଦାୟ ପଇସା ହିସାବ କରି ଦିଅନ୍ତି ଓ ଜିନିଷ ଗୁଡିକୁ ଗୋଟିଏ ଖୋଳରେ ପୂରାଇ ଦିଅନ୍ତି ।

ପଇସାପତ୍ର ଦେଲାବେଳେ କାଉଣ୍ଟରର ବ୍ୟକ୍ତି ଜଣକ ଧନ୍ୟବାଦ ଜଣାଇଥାନ୍ତି । ପୁଣି ଖୁଚୁରା ପଇସା ଫେରେଇଲାବେଳେ ମଧ୍ୟ ଧନ୍ୟବାଦ ଜଣାଇଥାନ୍ତି ।

କାଉଣ୍ଟରରେ ଆଣୁଥିବା ଜିନିଷପତ୍ର ବିନିମୟରେ ପଇସା ପତ୍ର ବୁଝେଇଦେବାର ସଂପୂର୍ଣ୍ଣ ଦାୟିତ୍ୱ ଗ୍ରାହକ ଉପରେ ଥାଏ । ମାତ୍ର ସବୁ ଲୋକ ସମାନ ନୁହଁନ୍ତି । ସମସ୍ତଙ୍କ ଚରିତ୍ର ମଧ୍ୟ ନିର୍ମଳ ନଥାଏ । ପୁନଶ୍ଚ ଗୋଟିଏ ସୁପର ମାର୍କେଟରୁ ଜିନିଷ କିଣି ଆଉ ଗୋଟିଏ ସୁପର ମାର୍କେଟରେ ପଶି ଜିନିଷ କିଣିବା ମଧ୍ୟ ଏକ ସ୍ୱଭାବିକ ଘଟଣା । ସେଥିପାଇଁ କେହି ଦୃଷ୍ଟି ଦିଅନ୍ତି ନାହିଁ । କାରଣ ପ୍ରଥମେ କିଣିଥିବା ସୁପର ମାର୍କେଟର ନାମ ସହଥିବା ପଲିଥିନ୍ ବ୍ୟାଗ୍‌ରେ ସେ ମାର୍କେଟ ଜିନିଷଥାଏ । ମାତ୍ର ଏହାର ସୁଯୋଗ ନେଇ କେହି କେହି ପ୍ରଥମେ କିଣିଥିବା ସୁପର ମାର୍କେଟର ଖୋଳରେ ଅନ୍ୟ ମାର୍କେଟର ଜିନିଷ ରଖିଦିଅନ୍ତି । ଏହାଫଳରେ ଠକିବା ସହଜ ହୋଇଥାଏ ।

ମାତ୍ର ପ୍ରତ୍ୟେକ ସୁପର ମାର୍କେଟରେ ନିଜସ୍ୱ ଗୁଇନ୍ଦା ବିଭାଗ ଥାଏ । ସେ ବିଭାଗର କର୍ମଚାରୀ ମାନେ ଗ୍ରାହକ ବିଭିନ୍ନସ୍ଥାନରୁ ଆଣୁଥିବା ଜିନିଷପତ୍ର ଉପରେ ସତର୍କ ଦୃଷ୍ଟି ରଖିଥାନ୍ତି । କିଏ ଗୁଇନ୍ଦା ବିଭାଗର କର୍ମଚାରୀ ତାହା ଗ୍ରାହକ ସହଜରେ ଜାଣିପାରେ ନାହିଁ ।

କୌଣସି ଗ୍ରାହକ କାଉଣ୍ଟରରେ ଜିନିଷପତ୍ର ବିନିମୟରେ ପଇସାପତ୍ର ନଦେଇ ଚାଲିଗଲାବେଳେ ତାକୁ ଗୁଇନ୍ଦା କର୍ମଚାରୀ ଧରି ପକାନ୍ତି । ସେ ଯେତେ ଅନୁନୟ ବିନୟ ହେଲେ ମଧ୍ୟ ସେମାନେ ଛାଡନ୍ତି ନାହିଁ । ଏପରିକି ପଇସାପତ୍ର ଦେବାକୁ ଭୁଲି ଯାଇଛି ବୋଲି କହିଲେ ମଧ୍ୟ ଶୁଣନ୍ତି ନାହିଁ ।

ଏପରି ଗ୍ରାହକମାନଙ୍କୁ ସେ ଅଞ୍ଚଳର ଟେଲିଭିଜନରେ ମଧ୍ୟ ବେଳେବେଳେ ଦେଖାଇ ଥାନ୍ତି ।

ସେହିପରି ଅନ୍ୟଦେଶରୁ ଆସିଥିବା ଅନେକ ଭଦ୍ରବ୍ୟକ୍ତି ମଧ୍ୟ ସୁପରମାର୍କେଟର ଗୁଇନ୍ଦା ବିଭାଗଦ୍ୱାରା ଧରାପଡି ଅପଦସ୍ତ ହେବାର ଅନେକ ଦୃଷ୍ଟାନ୍ତ ଅଛି ।



# ସୁପର ମାର୍କେଟରେ ପାମ୍ପଡ଼ ପ୍ରସଙ୍ଗ

ଜାନୁୟାରୀ ମାସରେ କାର୍ଲାଇଲର ପାଣିପାଗ ବିଶେଷ ଖରାପଥାଏ । ଅଧିକାଂଶ ସମୟରେ ସାଇଁ ସାଇଁ ପବନ ସହିତ ବର୍ଷା ଝଡ ଓ ତା'ସହିତ ତୁଷାରପାତ ।

ଏପରି ପାଗରେ କୋଠରୀଟିର ଚାରିକାନ୍ଥରେ ବସି ରହିଥିଲାବେଳେ ଆମକୁ ଆମ ଦେଶରେ କ୍ୱଚିତ ଦେଖା ଦେଉଥିବା ଝଡପାଗ ସଂପର୍କରେ ମନେ ପଡେ । ମୁଢି, ନଡିଆ କିମ୍ବା ପାମ୍ପଡ ଖାଇବାକୁ ମନହୁଏ ।

ଦିନେ ମୁଁ ମୋର ମନ କଥା ଜଣେ ବନ୍ଧୁଙ୍କୁ କହିଲି । ମୋ କଥାଶୁଣି ସେ କହିଲେ, "ଆରେଭାଇ, ଆମ ପାଖରେ ସିନା ମୁଢି ନଡିଆ ନାହିଁ, ମାତ୍ର ଆଜି ଚାଲ ସୁପରମାର୍କେଟରେ ବୁଲି ପାମ୍ପଡ ଖୋଜିବା ।"

ସେଦିନ ଆମେ ପ୍ରତିକୂଳ ପାଗ ସତ୍ତ୍ୱେ ସୁପରମାର୍କେଟକୁ ପାମ୍ପଡ ଖୋଜି ବାହାରିଲୁ । କିନ୍ତୁ ପାମ୍ପଡକୁ ଇଂରେଜରେ କ'ଣ କୁହନ୍ତି ତାହା ଆମକୁ ଜଣା ନଥିଲା । ତଥାପି ମାର୍କେଟରେ ଗ୍ରାହକ ସେବା ଓ ସମସ୍ୟା ବୁଝିବାକୁ ଥିବା ଜଣେ କର୍ମଚାରୀଙ୍କୁ କହିଲୁ "ଆଜ୍ଞା ! ଗୋଟିଏ ପିଠାପରି ଜିନିଷ ଅଛି । ଆମେ ତାକୁ ସେକି କିମ୍ବା ତେଲରେ ଭାଜି ଖାଇଥାଉ । ତାକୁ ଏଠାରେ ଆପଣମାନେ କ'ଣ କହୁଛନ୍ତି ଆମକୁ ଜଣା ନାହିଁ । ଆପଣଙ୍କ ପାଖରେ ସେପରି ଜିନିଷ ଅଛି କି ?"

ଆମକଥା ଶୁଣି ସେ ଭଦ୍ରଲୋକ ଟିକିଏ ଚିନ୍ତାକଲେ । ପରେ ସେ ଜାଣି ନାହାଁନ୍ତି ବୋଲି କହିଲେ ।

ତଥାପି ଏତିକିରେ ଆମ ପାମ୍ପଡଖିଆ ନିଶା କମିଲା ନାହିଁ । ଅନ୍ୟ ଏକ ସୁପର ମାର୍କେଟକୁ ଗଲୁ ଓ ପୂର୍ବପରି ବର୍ଣ୍ଣନା କଲୁ । ସେଠାରୁ ମଧ୍ୟ କିଛି ସୁଫଳ ମିଳିଲା ନାହିଁ ।

ଏମିତି ଦୁଇତିନୋଟି ସ୍ଥାନରେ ବୁଲିଲାପରେ ନିରାଶ ହୋଇ ଫେରୁଥିଲୁ । ଫେରିବା ସମୟର ଶେଷ ଚେଷ୍ଟା ସ୍ୱରୂପ ଗୋଟିଏ ମାର୍କେଟରେ ପଶି ଜଣେ ଭଦ୍ରବ୍ୟକ୍ତିଙ୍କୁ ପୂର୍ବପରି ବର୍ଣ୍ଣନା କଲୁ । ମାତ୍ର ଆମ ବର୍ଣ୍ଣନାରେ ଅସହାୟତାର ସ୍ୱର ସହିତ ଆଉ ଗୋଟିଏ ବାକ୍ୟ ଯୋଡିଲୁ । କହିଲୁ, "ସେ ପିଠାପରି ଜିନିଷକୁ ଏଠାରେ କ'ଣ କୁହାଯାଏ ଆମେ ଜାଣୁନା । କିନ୍ତୁ ଆମ ଦେଶରେ ଆମେତାକୁ ପାମ୍ପଡ ବୋଲି କହୁ ।"

ପାମ୍ପଡ ଶବ୍ଦଶୁଣି ସେ ଲୋକଟି ସଙ୍ଗେ ସଙ୍ଗେ କହି ଉଠିଲେ, "ଓଃ ପାମ୍ପଡମ୍ ! ପାମ୍ପଡମ୍ !!

ଏହାକହି ସେ ଦୋକାନର ଗୋଟିଏ କୋଣକୁ ଗଲେ । ଆମ ପାଇଁ ଦୁଇ ପ୍ୟାକେଟ୍ ପାମ୍ପଡ ଆଣିଲେ ।

ସେହି ପ୍ୟାକେଟ୍‌ରେ ପାମ୍ପଡ ମାଡ୍ରାସ ତିଆରି ବୋଲି ଲେଖା ହୋଇଥିଲା ।

ଯାହାହେଉ ଡେରିରେ ହେଲେ ମଧ୍ୟ ଆମର ବାଞ୍ଛିତ ଜିନିଷଟି ଆମକୁ ମିଳିଗଲା ।

ପୁଣି ବିଦେଶରେ ଆମଦେଶର ପାମ୍ପଡ ଦେଖି ଆମ ମନ ବହୁତ ଖୁସି ହେଲା ।



# ହ୍ରଦ ଜିଲ୍ଲାର କବି ଉଇଲିୟମ ୱ୍ୱାର୍ଡସୱ୍ୱର୍ଥ



ଇଂରେଜ ସାହିତ୍ୟ ସହିତ ଅଳ୍ପବହୁତ ପରିଚିତ ଲୋକଙ୍କ ମଧ୍ୟରେ କବି ୱ୍ୱାଡର୍ସୱ୍ୱର୍ଥଙ୍କୁ ନ ଜାଣେ ବା କିଏ ? ସେଥିଲେ ଉଭୟ ମଣିଷ ଓ ପ୍ରକୃତିର କବି । ମଣିଷ ପ୍ରତି ତାଙ୍କ ମନରେ ଯେତିକି ସମ୍ବେଦନ ଶୀଳତା ଭରି ରହିଥିଲା, ପ୍ରକୃତି ପ୍ରତି ମଧ୍ୟ ସେତିକି ନମନୀୟତା ତାଙ୍କ କାବ୍ୟ କବିତାରେ ପ୍ରତିଫଳିତ ହେଉଥିଲା ।

ଆମେ ଆମର ମାଧମିକ ଶିକ୍ଷାସ୍ତରରୁ କବି ୱ୍ୱାଡର୍ସୱ୍ୱର୍ଥଙ୍କ କାବ୍ୟ କବିତା ସହିତ ପରିଚିତ ଥିଲୁ ।

କାର୍ଲଲାଇଲରେ ପହଞ୍ଚିଲାପରେ ପ୍ରକୃତି ଓ ମଣିଷର ଏହି ଦରଦୀ କବିଙ୍କ ବାସଭବନ ଓ ତାଙ୍କର ଜନ୍ମସ୍ଥାନ ହ୍ରଦ ଜିଲ୍ଲା (Lake District) ଦେଖିବା ପାଇଁ ମନରେ ଆଗ୍ରହ ଦେଖା ଦେଇଥିଲା । ଆମର ଶିକ୍ଷାଦାନ ସକାଳେ ଆରମ୍ଭ ହୋଇ ସନ୍ଧ୍ୟାରେ ସରୁଥିବାରୁ କବିଙ୍କ ଜନ୍ମସ୍ଥାନ ବୁଲିଯିବାର ବିଶେଷ ସୁଯୋଗ ନଥିଲା ।

ବେଳେବେଳେ ମଣିଷ ଯାହା ଚାହିଁଥାଏ, ତାହା ଈଶ୍ୱରଙ୍କ ଅପାର କରୁଣାରୁ ସମ୍ଭବପର ହୋଇଥାଏ । ତାହାହିଁ ଘଟିଲା ଆମ ଭାଗ୍ୟରେ । ଦିନେ ଆମକୁ ଆମର ଟିଉଟର  ଗାୟ ପିଦରସନ୍ ଆସି କହିଲେ, "ଆମେ କବି

ଓ୍ୱର୍ଡସ୍ୱର୍ଥଙ୍କ ଉପରେ ଏକ ଶିକ୍ଷା କାର୍ଯ୍ୟକ୍ରମ କରିବା । ସେଥିପାଇଁ ଆମକୁ ଲେକ ଡିଷ୍ଟ୍ରିକ୍ଟ ଓ କବିଙ୍କ ଜନ୍ମସ୍ଥାନକୁ ଛବି ଉତ୍ତୋଳନ କରିବା ନିମନ୍ତେ ଯିବାକୁ ପଡିବ ।"

ଗାୟ ଫିଦରସନଙ୍କ ସୂଚନା ଆମ ପାଇଁ ଆନନ୍ଦ ଦାୟକ ଥିଲା । କାରଣ ବିଲାତ ଯାଇ ପିଲାଦିନୁ ଜାଣିଥିବା କବି ଓ୍ୱାଡସଓ୍ୱର୍ଥଙ୍କ ବାସ୍ଥାନ ଓ କବିଙ୍କ ବର୍ଣ୍ଣିତ ଡାଫୋଡିଲ ଫୁଲ ଦେଖିବା ପାଇଁ ଆମେ ଏକ ପ୍ରକାର ପାଗଳ ହୋଇ ଯାଇଥିଲୁ ।

କାର୍ଲଲାଇଲ ନିକଟସ୍ଥ ଏହି ହ୍ରଦ ଜିଲ୍ଲାଟି ଅନେକ ଗୁଡିଏ ହ୍ରଦକୁ ନେଇ ଗଠିତ । ସେହିସବୁ ହ୍ରଦ ମଧ୍ୟରେ ଓ୍ୟଣ୍ଡରମୟର, ଉଲସ୍ୱାଟର ଓ ଡରଓ୍ୱେଣ୍ଟ ଓ୍ୱାଟର ଆଦି ପ୍ରଧାନ । ଏହି ହ୍ରଦମାନଙ୍କୁ ଘେରି ରହିଛି ସ୍କାପେଲ ପାଇକ୍, ହେଲଭିଲିନ୍ ଓ ସ୍କିଥ୍ ପର୍ବତମାଳା । ପର୍ବତମାଳା ଘେରା ଏହି ହ୍ରଦ ଗୁଡିକର ଦୃଶ୍ୟ ଅତୀବ ରମଣୀୟ ।

ପ୍ରକୃତି କବି ୱିଲିୟମ୍ ଓ୍ୱର୍ଡସ୍ୱର୍ଥଙ୍କ ଜୀବନର ଅଧିକାଂଶ ସମୟ ଏହି ଲେକ ଡିଷ୍ଟ୍ରିକ୍ଟରେ ଅତିବାହିତ ହୋଇଥିଲା ।

ସେ ହ୍ରଦ ଜିଲ୍ଲାର ପ୍ରାକୃତିକ ଶୋଭାସମ୍ଭାର ଉପଭୋଗ କଲାବେଳେ ପ୍ରକୃତିକୁ ଗଭୀର ଭାବେ ଅଧ୍ୟୟନ କରୁଥିଲେ । ଭ୍ରମଣ ସମୟରେ ସେ ତାଙ୍କ ସହିତ ତାଙ୍କର ଭଉଣୀ ଡୋରଥୀ ଓ୍ୱାର୍ଡସ୍ୱର୍ଥ (Dorothy Wordsworth)ଙ୍କୁ ନେଉଥିଲେ । କବିତ୍ୱର ସରହଦ ଡେଇଁ କବିତାଟିଏ ଆତ୍ମପ୍ରକାଶ କଲେ ସେ ସେହି କବିତାର ଧାଡିଗୁଡିକୁ ତାଙ୍କ ଭଉଣୀକୁ ଡାକି ଦେଉଥିଲେ । ଡୋରଥୀ ଅତି ଆଗ୍ରହର ସହିତ ସେହି କବିତା ଗୁଡିକୁ ଲେଖି ଯାଉଥିଲେ ।

କବି ଓ୍ୱାର୍ଡସ୍ୱର୍ଥଙ୍କର ପ୍ରକୃତି ପ୍ରତି ଅନନ୍ୟ ଶ୍ରଦ୍ଧାଥିଲା । ସେ ପ୍ରକୃତିକୁ ମଣିଷର ପଥ ପ୍ରଦର୍ଶକ, ଅଭିଭାବକ ଓ ଦାର୍ଶନିକ ବୋଲି କହୁଥିଲେ । ସେ ଅନେକ ସମୟରେ ଭଉଣୀ ଡୋରଥୀଙ୍କୁ କହୁଥିଲେ, "ଭଉଣୀ ! ତୁମେ ତୁମର ସମସ୍ତ ବିଶ୍ୱାସ ଏହି ପ୍ରକୃତି ଉପରେ ଢାଳିଦିଅ । ସେ କେବେ ତୁମକୁ ତୁମ ଜୀବନରେ ପ୍ରତାରଣା କରିବେ ନାହିଁ ।"

ବାସ୍ତବିକ ସୃଷ୍ଟି ପ୍ରାରମ୍ଭରୁ ମଣିଷ ଜୀବନ ଉପରେ ପ୍ରକୃତିର ପ୍ରଭାବ ଅନନ୍ୟ ।

ପ୍ରାଚୀନକାଳରେ ଆମ ଦେଶର ମୁନି ଋଷିମାନେ ପ୍ରକୃତି ଘେରା ବଣ, ଜଙ୍ଗଲ, ପାହାଡ, ପର୍ବତ ଅଞ୍ଚଳକୁ ଚାଲି ଯାଉଥିଲେ । ପ୍ରକୃତି ଓ ପ୍ରାକୃତିକ ପରିବେଶରେ ଘଟୁଥିବା ନୀତି ଓ ନିୟମ ଗୁଡିକୁ ଟିକି ନିକି ଅଧ୍ୟୟନ କରୁଥିଲେ । ଏହି ସବୁ ପ୍ରାକୃତିକ ନୀତି ଓ ନିୟମ ଗୁଡିକ କିପରି ମଣିଷ ଜୀବନ ଉପରେ ପ୍ରଭାବ ପକାଉଅଛି ତାହା ଗବେଷଣା କରୁଥିଲେ । ସେହି ଗବେଷଣା ଲବ୍ଧ ତଥ୍ୟକୁ ମାନବ ସମାଜର କଲ୍ୟାଣ ନିମନ୍ତେ ପ୍ରକାଶ କରୁଥିଲେ । ବୃକ୍ଷଲତାର ଔଷଧୀୟ ଗୁଣଠାରୁ ଆରମ୍ଭକରି ପ୍ରକୃତିର ସୁରକ୍ଷା ଓ ପ୍ରାକୃତିକ ସଂପଦର ସଦ୍ ବିନିଯୋଗ ନିମନ୍ତେ ସେମାନେ ଯେଉଁ ମୂଲ୍ୟବାନ ତଥ୍ୟମାନ ଦେଉଥିଲେ, ତାହା ମଣିଷ ସମାଜ ପ୍ରତି ମହାର୍ଘ ଥିଲା ।

ସେଇଥିପାଇଁ ପୃଥିବୀର କଳା, ସାହିତ୍ୟ ଓ ସଂସ୍କୃତି ପ୍ରତି ମଣିଷ ସମାଜର ଦାନ ଅତୁଳନୀୟ ବୋଲି କୁହାଯାଏ ।



# କବି ଓ୍ୱାର୍ଡସଓ୍ୱର୍ଥଙ୍କ ଜନ୍ମପୀଠରେ ଆମେ

ଆମେ ପ୍ରଥମେ କବିଙ୍କର ଜନ୍ମସ୍ଥାନ କକରମାଉଥରେ ପହଞ୍ଚିଲୁ । କବି ଏହିସ୍ଥାନରେ ୧୭୭୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ।

କକରମାଉଥର ପ୍ରାକୃତିକ ଶୋଭା ସମ୍ଭାର ଅତୀବ ରମଣୀୟ ଥିଲା । ଗାଁଟିର ନିକଟରେ ବହି ଯାଉଥିବା ଡରଓ୍ୱେଣ୍ଟ ନଦୀରେ ସ୍ନାନକରି କବି ଅପାର ଆନନ୍ଦ ପାଉଥିଲେ । ସେହିପରି ଦୂର ଦିଗବଳୟ ଛୁଇଁ ଠିଆ ହୋଇଥିବା ସ୍କିଡୋପର୍ବତ କବିଙ୍କର ମନ ଦିଗ୍‌ବଳୟକୁ ନୂତନ ଭାବନାରେ ଆନ୍ଦୋଳିତ କରୁଥିଲା ।

କବି ବାସ କରୁଥିବା ଘରଟିର ନାମ ଡୋଭ କଟେଜ' । ସେ ଏହିଘରେ ତାଙ୍କ ଜୀବନର ଦୀର୍ଘ ସମୟ ବିତାଇଥିଲେ । ମାତ୍ର ପୁଅ ଟମାସ ଓ କନ୍ୟା କାଥାରିନ୍‌ଙ୍କ ଅକାଳ ବିୟୋଗର ସ୍ମୃତି ତାଙ୍କ ପାଇଁ ଅତୀବ ଦୁଃଖ ଦାୟକ ଥିଲା । ସନ୍ତାନଦ୍ୱୟଙ୍କ ବିଚ୍ଛେଦ-ଜନିତ ଦୁଃଖରୁ ରକ୍ଷା ପାଇବା ପାଇଁ କବି ଡୋଭକଟେଜ (Dove Cottage) ଛାଡି ଲେକ୍ ଡିଷ୍ଟ୍ରିକ୍ଟର ରାଇଡେଲ ମାଉଣ୍ଟରେ କଟାଇଥିଲେ ।

ରାଇଡେଲ୍‌ମାଉଣ୍ଟ ସ୍ଥିତ ଘରେ କବି ୧୭୯୯ ମସିହା ଡିସେମ୍ବରମାସ ୨୦ ତାରିଖରେ ଆସି ରହିଥିଲେ ।

ଏହିଘରେ କବି ବିତାଇଥିବା ପ୍ରତ୍ୟେକ ମୁହୂର୍ତ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା ।

କବି ସଲିଟାରି ରିପର (The Solitary Reaper), ଇନ୍ଦ୍ରଧନୁ (The Rainbow) ଓ କୁକୋପ୍ରତି (The Coakoo) କବିତା ଏହିଘରେ ରଚନା କରିଥିଲେ । ଏତଦ୍‌ବ୍ୟତୀତ କବିଙ୍କ ରଚିତ କାବ୍ୟ ପ୍ରସ୍ତାବନା (The Prelude) ମଧ୍ୟ କବି ଏହିଠାରେ ଲେଖିଥିଲେ ।

କବି ତାଙ୍କ ଜୀବନର ଶେଷ ଭାଗରେ ଏହି ଘରେ ବିତାଇଥିଲେ । ତାଙ୍କ ସହିତ ସ୍ତ୍ରୀ ମେରୀ ହଚିନ୍‌ସନ୍ (May Hutchinson) ଓ ପ୍ରିୟ ଭଉଣୀ ଡୋରଥୀ ମଧ୍ୟ ଆସି ରହିଥିଲେ । ତା' ଛଡା କବିଙ୍କର ତିନୋଟି ପିଲା ଜନ୍, ଡୋରା, ଓ ଉଇଲିୟମ୍‌ଙ୍କ ହସଖେଳ ମଧ୍ୟରେ ଏହି ଘରଟି ଚଳଚଞ୍ଚଳ ଥିଲା ।

ଆମେ କବିଙ୍କର ଉକ୍ତ ଘରଟି ବୁଲି କବି ବ୍ୟବହାର କରିଥିବା ବିଭିନ୍ନ ଆସବାବ ପତ୍ର ଦେଖିବାର ସୁଯୋଗ ପାଇଲୁ । କବି ବ୍ୟବହାର କରୁଥିବା 'କୁକୋ କ୍ଲକ' ଦେଖିବାର ସୌଭାଗ୍ୟ ମିଳିଲା ।

କବିଙ୍କର ବୈଠକଖାନା ଓ ଶୟନ କକ୍ଷ ପୂର୍ବବତ୍ ସଜ୍ଜା ହୋଇ ରହିଥିଲା ।

ସତେ ଯେମିତି କବି ଏବେ ବି ସେହି ଘରଗୁଡିକୁ ବ୍ୟବହାର କରୁଛନ୍ତି ।



# ୱାର୍ଡସୱର୍ଥଙ୍କ ପିଲାବେଳର ବିଦ୍ୟାଳୟ : ହକ୍‌ସେଡ୍

ଲେକ୍ ଡିଷ୍ଟ୍ରିକ୍‌ଟର ଓ୍ୟଣ୍ଡରମିୟର ହ୍ରଦର ଛବିର ଦୃଶ୍ୟ କ୍ୟାମେରାରେ ଉତ୍ତୋଳନ କରିସାରିବା ପରେ ଆମେ ପିଲାବେଳେ କବି ପଢୁଥିବା ଗ୍ରାମ ହକ୍‌ସେଡ୍ (Hawkeshead)ର ଛବି ଉତ୍ତୋଳନ କରିବାକୁ ଯାଇଥିଲୁ । ଏହି ଗ୍ରାମର ଏକ ପ୍ରାଥମିକ ବିଦ୍ୟାଳୟରେ କବି ବାଲ୍ୟଶିକ୍ଷା ଲାଭ କରିଥିଲେ ।

ଏହି ବିଦ୍ୟାଳୟରେ ପିଲାବେଳେ କବି ବ୍ୟବହାର କରିଥିବା ଏକ ଛୋଟିଆ ଡେକ୍ସ କବିଙ୍କ ବାଲ୍ୟ ଜୀବନରେ ସ୍ମୃତି ହିସାବରେ ରଖାଯାଇଅଛି । ଉକ୍ତ ଡେକ୍ସରେ କବି ନିଜର ନାମ ଖୋଦିତ କରିଛନ୍ତି ।

କବିଙ୍କର ବାଲ୍ୟଦିନର ସେହି ବିଦ୍ୟାଳୟ ଓ ଡେକ୍ସ ଦେଖିବାକୁ ପ୍ରତିଦିନ ବହୁ ଦେଶ ବିଦେଶର ଦର୍ଶକ ହକ୍‌ସେଡ ଗ୍ରାମକୁ ଯାଇଥାନ୍ତି ।



# ବିଶ୍ୱ ସାହିତ୍ୟର ପ୍ରଖ୍ୟାତ ସ୍ଥାନ : ହ୍ରଦଜିଲ୍ଲା

ହ୍ରଦଜିଲ୍ଲା ବୁଲୁଥିଲାବେଳେ ଆମେ ତିନବନ୍ଧୁ ଆମ ଟିଉଟର ଗାୟଫିଦର ସନ୍‌ଙ୍କ ସହିତ ଏହି ଜିଲ୍ଲାର ଇତିହାସ, ସଂସ୍କୃତି ଓ ଏଥି ସହିତ ସଂଶ୍ଳିଷ୍ଟ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ସଂପର୍କରେ ଆଲୋଚନା କରୁଥିଲୁ ।

ବୁଲିବା ସମୟରେ ଆମ ମଧ୍ୟରୁ ଜଣେ କହିଲେ, "ଯାହାହେଉ ଲେକଡିଷ୍ଟ୍ରିକ୍ଟ ହେଉଛି ବିଶ୍ୱ ସାହିତ୍ୟର ଏକ ପ୍ରଖ୍ୟାତ ସ୍ଥାନ ।"

ବନ୍ଧୁଙ୍କର ମନ୍ତବ୍ୟ ଶୁଣି ଗାୟ ଫିଦରସନ ଟିକିଏ ହସିଲେ ଓ ସଙ୍ଗେ ସଙ୍ଗେ କହିଲେ, "ଓଃ, ଲେକଡିଷ୍ଟ୍ରିକ୍ଟ ଆଜି କବି ଓ୍ୱାର୍ଡସଓ୍ୱାର୍ଥଙ୍କ ପାଇଁ ବିଶ୍ୱ ବିଖ୍ୟାତ ହୋଇଛି ।"

ଆମ ଟିଉଟରଙ୍କ ମନ୍ତବ୍ୟ ଯଥାର୍ଥ ଥିଲା । ପୃଥିବୀରେ ହୁଏତ ଲେକ ଡିଷ୍ଟ୍ରିକ୍ଟଠାରୁ ଆହୁରି ବଡବଡ ପ୍ରାକୃତିକ ଶୋଭା ସଂପଦ ଥିବ । ମାତ୍ର ସେହି ଶୋଭା ସଂପଦକୁ ବିଶ୍ୱ ସାହିତ୍ୟରେ ବର୍ଣ୍ଣନା କରିବାକୁ କେଉଁ ଭାଗ୍ୟବାନ କବି ଜନ୍ମ ଗ୍ରହଣ କରିବାକୁ ଅପେକ୍ଷା କରିଥିବେ ।

ଏହି ସମୟରେ ମୋର ମନେ ପଡିଲା ଆମ ରାଜ୍ୟର ସବୁଠାରୁ ବଡନଦୀ ମହାନଦୀ କଥା । ଏହି ନଦୀଟି ବଡ ହେଲେ ମଧ୍ୟ ବିଶ୍ୱସାହିତ୍ୟରେ ବର୍ଣ୍ଣିତ ହେବାର ସୌଭାଗ୍ୟ ମଧ୍ୟ ଆଜି ପର୍ଯ୍ୟନ୍ତ ହୋଇନାହିଁ । ମାତ୍ର କବି କାଳିଦାସଙ୍କ ସାହିତ୍ୟରେ 'କ୍ଷୁଦ୍ର ସିପ୍ରାତଟ' ସାରା ବିଶ୍ୱରେ ପ୍ରସିଦ୍ଧ ।

ସେଇଥିପାଇଁ କବିବର ରାଧାନାଥ ରାୟ ତାଙ୍କର ଚିଲିକା କାବ୍ୟରେ ଯଥାର୍ଥରେ ଲେଖିଛନ୍ତି ।

"ମହାନଦୀ ନାମ ରହିଲା ଗୁପତେ
କ୍ଷୁଦ୍ର ସିପ୍ରାତଟ ବିଖ୍ୟାତ ଜଗତେ ।"

ସେଦିନ ଆମେ ଲେକଡିଷ୍ଟ୍ରିକ୍ଟ ଭ୍ରମଣ ଓ ସେ ସ୍ଥାନର ବିଭିନ୍ନ ଦୃଶ୍ୟର ଛବି ଉତ୍ତୋଳନ କରି ବିଶେଷ କ୍ଳାନ୍ତ ହୋଇ ପଡିଥିଲୁ ।

ଲେକଡିଷ୍ଟିକ୍ଟ ଉପରକୁ ସନ୍ଧ୍ୟା ନଇଁ ଆସିବା ପୂର୍ବରୁ ଆମେ ଫେରି ଆସିଥିଲୁ କାର୍ଲଲାଇଲର ଆମର ପ୍ରିୟ ବାସସ୍ଥାନ ୟୁକ୍ରେନିୟନ କ୍ଳବକୁ ।



# ଟୋନିଙ୍କର ଜୀବନ ଦର୍ଶନ

ଆମେ ହ୍ରଦ ଜିଲ୍ଲାର ପ୍ରାକୃତିକ ପରିବେଶ ଓ କବି ୱିଲିୟମ୍ ୱର୍ଡସ୍‌ୱର୍ଥଙ୍କ ଘରଦ୍ୱାର ଆଦିର ଛବି ଉତ୍ତୋଳନ କରିବାକୁ ଗଲାବେଳେ ବାହାରେ ମଧ୍ୟାହ୍ନଭୋଜନ କରିବାକୁ ବାଧ ହେଉଥିଲୁ ।

ଏଣୁ ଆମର ସୁଟିଙ୍ଗ୍‌ଟିମ୍ ସହିତ ଆମେ ସମସ୍ତେ ସେହି ସମୟରେ ରାସ୍ତାକଡରେ ଅବସ୍ଥିତ ବିଭିନ୍ନ ହୋଟେଲରେ ମଧ୍ୟାହ୍ନ ଭୋଜନ କରିବାର ସୁଯୋଗ ପାଉଥିଲୁ ।

"ମଧ୍ୟାହ୍ନ ଭୋଜନ ସମୟରେ ଆମେ ସାଧାରଣତଃ ରୁଟି, ଚିପ୍‌ସ୍, ସାଣ୍ଡଔଇସ, ମାଛ କିମ୍ୱା କୁକୁଡା ମାଂସ ଖାଉଥିଲୁ ।

ଆମ ସହିତ ଯାଇଥିବା ସୁଟିଙ୍ଗ୍‌ଟିମ୍‌ର ସାହେବମାନେ ମଧ ସେହି ଖାଦ୍ୟ ଖାଉଥିଲେ ।

କିନ୍ତୁ ଆମେ ସବୁବେଳେ ଲକ୍ଷ୍ୟ କଲୁ ଯେ ଟୋନି (Tonny) କେବେ ମାଛ କିମ୍ୱା ମାଂସ ଖାଉ ନାହାନ୍ତି ।

ସେ ସବୁବେଳେ ନିରାମିଷ ଖାଦ୍ୟ ପସନ୍ଦ କରୁଥିଲେ ।

ଦିନେ ଆମେ ତାଙ୍କୁ ପଚାରିଲୁ, "ଟୋନି, ତୁମ ଦେଶତ ଥଣ୍ଡା ଦେଶ । ଆମର ଧାରଣା ଥଣ୍ଡା ଦେଶର ସବୁ ଲୋକ ମାଂସଯୁକ୍ତ ଖାଦ୍ୟ ଖାଇବାକୁ ପସନ୍ଦ କରନ୍ତି । ମାତ୍ର ତୁମେ କେବେ ଅଣ୍ଡା, ଚିକେନ୍, ମଟନ, କିମ୍ୱା ମାଛ ତରକାରୀ ମଧ ଖାଉ ନାହଁ ।"

ଏହାର ଉତ୍ତର ଦେବାକୁ ଯାଇ ଟୋନି କହିଲେ "ମୁଁ ତ ଗୋଟିଏ ମୃତକକୁ ଜୀବନ ଦେଇ ପାରିବି ନାହିଁ; ତେବେ ଜୀବଟିର ଜୀବନ ନେବି କାହିଁକି ?"

ଏହାହିଁ ଥିଲା ଟୋନିଙ୍କର ଜୀବନ ଦର୍ଶନ ।

ସେଥିପାଇଁ ସେ ନିରାମିଷ ଖାଦ୍ୟ ଖାଉଥିଲେ । ଥଣ୍ଡା ଦେଶର ଜଣେ ସାହେବଙ୍କର ଜୀବନଚର୍ଯ୍ୟା ଯେ ଏପରି ହୋଇପାରେ ତାହାହିଁ ମୋତେ ଆଶ୍ଚର୍ଯ୍ୟ କରିଥିଲା ।

# କାର୍ଲଲାଇଲର ଏକ ମାଧ୍ୟମିକ ବିଦ୍ୟାଳୟରେ ଆମେ

ମାଧ୍ୟମିକ ଶିକ୍ଷାସ୍ତର ସହିତ ସଂପର୍କ ଥିବାହେତୁ ବିଲାତର ମାଧ୍ୟମିକ ବିଦ୍ୟାଳୟ ଗୁଡିକ କିପରି ଚାଲୁଛି, ତା'ର ଶିକ୍ଷାଦାନ ଓ ପ୍ରଶାସନ କିପରି ଚାଲୁଛି ତାହା ଜାଣିବାପାଇଁ ମନରେ ବିଶେଷ ଆଗ୍ରହ ଦେଖା ଦେଇଥିଲା ।

ଥରେ ଆମକୁ ଗାୟ ଫିଦରସନ ଆସି କହିଲେ, "କାଲି ଆମେ କାର୍ଲଲାଇଲର ସେଣ୍ଟ ଜୋସେଫ ହାଇସ୍କୁଲକୁ ବୁଲିଯିବା । ସେ ବିଦ୍ୟାଳୟ ଉପରେ ଏକ ଭିଡିଓ କାର୍ଯ୍ୟକ୍ରମ କରିବାକୁ ମୋତେ ଦାୟିତ୍ୱ ଦିଆଯାଇଅଛି ।"

ଏହି ସମୟରେ କମ୍ବ୍ରିୟା କାଉଣ୍ଟି କାଉନସିଲ ଉକ୍ତ ବିଦ୍ୟାଳୟକୁ ଏକ ରକମ ବନ୍ଦ କରିଦେବା ପାଇଁ ନିଷ୍ପତ୍ତି ନେଇଥିଲେ । ଏହାର କାରଣ ଥିଲା ଆର୍ଥିକ ଦୂରବସ୍ଥା, ମାତ୍ର ବିଦ୍ୟାଳୟର କର୍ମକର୍ତ୍ତାମାନେ ବିଦ୍ୟାଳୟଟିକୁ ବଞ୍ଚାଇ ରଖିବାକୁ ଚାହୁଁଥିଲେ । ବିଦ୍ୟାଳୟ ସପକ୍ଷରେ ସଚେତନତା ସୃଷ୍ଟିକରିବା ନିମନ୍ତେ ସେମାନେ ଏକ ଭିଡିଓ କାର୍ଯ୍ୟକ୍ରମ ମାଧ୍ୟମରେ ବିଦ୍ୟାଳୟର ଗୁଣାତ୍ମକ ସ୍ଥିତି ସଂପର୍କରେ ଆଲୋକପାତ କରିବାକୁ ଆମ ଶିକ୍ଷାକେନ୍ଦ୍ରକୁ ବିଦ୍ୟାଳୟର କର୍ମକର୍ତ୍ତାମାନେ ଅନୁରୋଧ କରିଥିଲେ । କାର୍ଯ୍ୟକ୍ରମର ପୂର୍ଣ୍ଣାଙ୍ଗ ପ୍ରସ୍ତୁତିପରେ ବ୍ରିଟିଶ ଟେଲିଭିଜନରେ ପ୍ରଦର୍ଶନ କରିବା ନିମନ୍ତେ ନିଷ୍ପତ୍ତି ନିଆଯାଇଥିଲା । ଏହାଫଳରେ ବିଦ୍ୟାଳୟର ସ୍ଥାୟିତ୍ୱ ସଂପର୍କରେ ଜନମତ ସୃଷ୍ଟି ହୋଇପାରିବ ବୋଲି ଶିକ୍ଷକ ଶିକ୍ଷୟିତ୍ରୀ ଓ ଅଭିଭାବକମାନେ ଭାବୁଥିଲେ ।

ବିଦ୍ୟାଳୟରେ ପହଞ୍ଚି ପ୍ରଥମେ ଆମେ କମ୍ପ୍ୟୁଟର ଶିକ୍ଷାଦାନ ପ୍ରକୋଷ୍ଠକୁ ପ୍ରବେଶ କଲୁ ।

ଆମକୁ ଦେଖି ଗୋଟିଏ ପିଲା ଆସି କେତେ କ'ଣ କହିଗଲା । ସେ ସେପରି କାହିଁକି କହୁଥିଲା ଆମେ ବୁଝି ପାରିଲୁ ନାହିଁ । ତା'ର ଆଚରଣ ମଧ୍ୟ ଆମ ସମସ୍ତଙ୍କୁ ଅସ୍ୱାଭାବିକ ଲାଗିଲା ।

ଏହି ସମୟରେ ଅନ୍ୟ କେତେକ ପିଲା ଆମ ଚାରିପାଖରେ ଘେରିଯାଇ କହିଲେ, "ଆଜ୍ଞା ! ତାକୁ କିଛି କହିବେ ନାହିଁ । ସେ ଟିକିଏ ଆଡବାୟା । ତା'ପରେ ମୁଁ ଲକ୍ଷ୍ୟକଲି ଯେ ତାକୁ ନେଇ ଅନ୍ୟ ପିଲାମାନେ ମଧ୍ୟ ଥଟ୍ଟାତାମସା କରୁଛନ୍ତି ।

କମ୍ପ୍ୟୁଟର ଶିକ୍ଷାଦାନ ସଂପର୍କୀୟ କାର୍ଯ୍ୟକ୍ରମଟିର ରେକଡିଂପରେ ପ୍ରାଣୀ ବିଜ୍ଞାନ (Zoology) ଗୃହକୁ ଶିକ୍ଷକଙ୍କ ଶିକ୍ଷାଦାନ ସଂପର୍କୀୟ କାର୍ଯ୍ୟ ରେକଡିଂ କରିବାକୁ ଯିବା ବାଟରେ ଗାର୍ଲସ କମନରୁମ ପଡିଲା । ଗାର୍ଲସ କମନରୁମଟି ଝିଅମାନଙ୍କ ପାଟିତୁଣ୍ଡ, ଥଟ୍ଟାତାମସା ଓ ହୋ-ହଲାରେ ଫାଟିପଡୁଥିଲା । ଏପରି ହେବା ମଧ୍ୟ ସ୍ୱଭାବିକ ଥିଲା । ସାଧାରଣତଃ କୈଶୋର ଅବସ୍ଥାରେ ଉପନୀତ ହୋଇଥିବା ବ୍ୟକ୍ତି ବିଶେଷଙ୍କର ଆଚରଣ ଏପରି ହୋଇଥାଏ ।

ପ୍ରାଣୀ ବିଜ୍ଞାନାଗାରରେ ଜନୈକ ଯୁବ ଶିକ୍ଷକ ଶିକ୍ଷାଦାନ କରୁଥିଲେ । ଆମ୍ଭେମାନେ ତାଙ୍କର ଅନୁମତି ନେଇ ଶ୍ରେଣୀ ଗୃହର ପଛପଟେ ଛିଡା ହୋଇ ତାଙ୍କର ଶିକ୍ଷାଦାନ ଶୁଣୁଥିଲୁ ।

ଏହି ସମୟରେ ସେ ଜୀବର ବଂଶ ବିସ୍ତାର ସଂପର୍କରେ ଶିକ୍ଷାଦାନ କରୁଥିଲେ । ପଢାଉ ପଢାଉ ସେ କହିଲେ ଯେ କେତେକ ପ୍ରାଣୀଙ୍କର ଯୌନ ସଂପର୍କ ମାଧ୍ୟମରେ ବଂଶ ବିସ୍ତାର ହୁଏ ।

ତାଙ୍କର ମନ୍ତବ୍ୟ ଶୁଣି ଏକା ସମୟରେ ସମସ୍ତ ପୁଅଝିଅ ହସରେ ଫାଟି ପଡିଲେ ।

ଶିକ୍ଷକ ପଚାରିଲେ, "କେଉଁ କାରଣ ପାଇଁ ତୁମେ ସମସ୍ତେ ଏକାବେଳେକେ ହସି ଉଠିଲ ?"

ଶିକ୍ଷକଙ୍କ ପ୍ରଶ୍ନଶୁଣି ଜଣେ କିଶୋରୀ ଝିଅ ଉଠିପଡି କହିଲା, "ଯୌନ ସଂପର୍କ କ'ଣ ?"

ଶିକ୍ଷକ ପିଲାମାନଙ୍କ କଥାକୁ ଭୁଲ ନବୁଝି ସଂଯମର ସହିତ ବୁଝାଇଲେ, "ସନ୍ତାନ ପ୍ରାପ୍ତିଲାଗି ପୁରୁଷ ଓ ସ୍ତ୍ରୀ ପ୍ରାଣୀମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ହେଉଥିବା

ଯୌନଗତ ଶାରୀରିକ ସଂପର୍କକୁ ଯୌନ ସଂପର୍କ କୁହାଯାଏ । ଜୀବକୁଳ ବଂଶ ବିସ୍ତାର ଲାଗି ଏହା ଅପରିହାର୍ଯ୍ୟ ।”

‘ଯୌନସଂପର୍କ’ ଏକ ସମ୍ବେଦନଶୀଳ ଅବବୋଧ ବା ଧାରଣା । କିଶୋର କିଶୋରୀମାନଙ୍କୁ ଏ ସଂପର୍କୀୟ ଧାରଣା ଦେଲାବେଳେ ସେମାନଙ୍କ ବୟସ ଦୃଷ୍ଟିରୁ ସେମାନେ ହସିବା ସ୍ୱଭାବିକ । ମାତ୍ର ଶିକ୍ଷକ ନିଜେ ନ ହସି କିମ୍ବା ପିଲାମାନଙ୍କୁ ଭୁଲ ନ ବୁଝି ଏ ସଂପର୍କୀୟ ତତ୍ତ୍ୱ ବୈଜ୍ଞାନିକ ପଦ୍ଧତିରେ ପିଲାମାନଙ୍କ ଆଗରେ ଉପସ୍ଥାପନ କଲେ । ପିଲାମାନେ ମଧ୍ୟ ଆଗ୍ରହର ସହିତ ଶିକ୍ଷକଙ୍କର କଥାକୁ ଶୁଣିବାକୁ ଲାଗିଲେ ।

ଶିକ୍ଷକଙ୍କର ପ୍ରାଣୀତତ୍ତ୍ୱ ପଢାଇବାର ଶୈଳୀ ଅତି ଉଚ୍ଚଧରଣର ଥିଲା ।

ସଂପ୍ରତି ସାରା ବିଶ୍ୱରେ ଯୌନଶିକ୍ଷା (Sex Exucation) ଅପରିହାର୍ଯ୍ୟ ହୋଇଅଛି । କାରଣ ଆମର ପାଠ୍ୟକ୍ରମରେ ଏ ସଂପର୍କୀୟ ସକାରାତ୍ମକ ଦିଗ ସଂପର୍କରେ ବିଭିନ୍ନ ତଥ୍ୟ ଏବେବି ଦେବାକୁ ଅଛି । କେତେକ ଶିକ୍ଷକ ଏହାକୁ ନିତାନ୍ତ ସମ୍ବେଦନଶୀଳ ବିଷୟ ବୋଲି କହିଥାନ୍ତି । ମାତ୍ର ମାର୍ଜିତ ଭାଷା ଓ ଶିକ୍ଷା ସଂପର୍କୀୟ ବିଷୟବସ୍ତୁକୁ ଶିକ୍ଷକ ଶିକ୍ଷୟିତ୍ରୀ ଶିକ୍ଷାଦାନ କଲେ ପିଲାମାନେ ବିଶେଷ ଉପକୃତ ହେବେ ।



# ପିଲାଙ୍କ ସହିତ ଆମ ମଧ୍ୟାହ୍ନଭୋଜନ

ବିଭିନ୍ନ ଶ୍ରେଣୀର ଶିକ୍ଷାଦାନ ସଂପର୍କୀୟ ଚିତ୍ର କ୍ୟାମେରାରେ ଉତ୍ତୋଳନ କରୁ କରୁ ସମୟ ଦିନ ଗୋଟାଏ ବାଜି ଯାଇଥିଲା ।

ଦିନ ଗୋଟାଏ ଠାରୁ ଦୁଇଟା ପର୍ଯ୍ୟନ୍ତ ଥିଲା ବିଦ୍ୟାଳୟର ମଧ୍ୟାହ୍ନଭୋଜନ ବିରତି ।

ଖାଇବା ସମୟ ହେବାମାତ୍ରେ ବିଦ୍ୟାଳୟର ପିଲାମାନେ ବିଦ୍ୟାଳୟର କ୍ୟାଣ୍ଟିନ୍‌କୁ ଚାଲିଲେ ।

ଆମ ସମସ୍ତଙ୍କୁ ମଧ୍ୟାହ୍ନଭୋଜନ ନିମନ୍ତେ ବିଦ୍ୟାଳୟ ତରଫରୁ ଗୋଟିଏ ଗୋଟିଏ ଟୋକନ୍ ଦିଆ ଯାଇଥିଲା । ଟୋକନ୍ ସହ ଆମେ ଡାଇନିଙ୍ଗ୍ ହଲରେ ପ୍ରବେଶ କଲୁ ।

ମୁଁ ଲକ୍ଷ୍ୟ କଲି ଯେ ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଖାଦ୍ୟ ଜିନିଷ ପାଇଁ ଲମ୍ବାଧାଡିମାନ ଲାଗିଛି । ପିଲାମାନେ ଧାଡିବାନ୍ଧି ନିଜ ମନ ମୁତାବକ ଜିନିଷ ଆଣିବା ପାଇଁ ଚାଲି ଯାଉଥାନ୍ତି । ଠେଲାପେଲାରେ ପହଞ୍ଚିଯିବାର ସମ୍ଭାବନା ନାହିଁ । ସେହିଥିରୁ ପିଲାମାନଙ୍କର ଶୃଙ୍ଖଳାଜ୍ଞାନର ପ୍ରମାଣ ମିଳିଥିଲା ।

ଆମ୍ଭେମାନେ ମଧ୍ୟ ଧାଡିବାନ୍ଧି ଆମଇଚ୍ଛା ଅନୁସାରେ କାଉଣ୍ଟରରୁ ଖାଦ୍ୟ ଜିନିଷ ଆଣିଲୁ । ମୁଁ କ୍ଷୀରୀ ବିକା ହେବାର ଦେଖିନଥିଲି । ମାତ୍ର ଏଠାରେ କ୍ଷୀରୀଭଳି ଏକ ଜିନିଷ ଖାଇବାକୁ ମିଳିଥିଲା । ତାହା ବିଶେଷ ସୁସ୍ୱାଦୁଥିଲା ।

ବିଦ୍ୟାଳୟରେ ଏସବୁ ଜିନିଷର ଦାମ ମଧ୍ୟ ବାହାର ଅପେକ୍ଷା କମ ଥିଲା । କାରଣ ବିଦ୍ୟାଳୟ କର୍ତ୍ତୃପକ୍ଷ ଏସବୁ ଖାଦ୍ୟ ସାମଗ୍ରୀ ରିହାତି ଦରରେ ବିଦ୍ୟାଳୟକୁ ଯୋଗାଇ ଦେଉଥିଲେ ।

ମଧ୍ୟାହ୍ନ ଭୋଜନ ପରେ ଆମେ ବିଦ୍ୟାଳୟର କାଷ୍ଠଶିଳ୍ପ ବିଭାଗର ଚିତ୍ର ଉତ୍ତୋଳନ କରିବାକୁ ଯାଇଥିଲୁ । ସେତେବେଳେ ଏକ ବିରାଟ ହଲରେ ପିଲାମାନେ

କାଠର ବିଭିନ୍ନ ପ୍ରକାରର ଆସବାବପତ୍ର ତିଆରି କରୁଥିଲେ । କିଏ କାଠର ବେଲଣା ପେଡିତ କିଏ କାଠର କଣ୍ଢେଇ ତିଆରି କରୁଥିଲେ । ପୁଣି କେତେକ କାଠର ମୂର୍ତ୍ତି ମଧ୍ୟ ତିଆରି କରୁଥିଲେ । ଆଉ କେତେକ ସଂପୂର୍ଣ୍ଣ ଜିନିଷଟି ତିଆରି କରି ସାରିବାପରେ ତାକୁ ବାଲି କାଗଜ (Sand paper)ରେ ଘଷି ଚିକଣ କରିବାରେ ଲାଗି ଥିଲେ ।

ପିଲାମାନେ ସେମାନଙ୍କ କାମରେ ଏପରି ନିମଜ୍ଜିତ ଥିଲେ ଯେ କେହି ଅନ୍ୟମନସ୍କ ହୋଇ ଆମ ଆଡକୁ ଚାହୁଁ ନଥିଲେ ।

ସେଥିରୁ ପିଲାମାନଙ୍କର ଧନ୍ଦାମୂଳକ ଶିକ୍ଷା ପ୍ରତି ସ୍ୱତପ୍ରବୃତ୍ତ ଆଗ୍ରହ ସଂପର୍କରେ ବିଶେଷ ଜାଣି ହେଉଥିଲା । ପିଲାମାନଙ୍କ ତିଆରି ଜିନିଷ କୌଣସି ଗୁଣରେ ଜଣେ ପେଷାଦାର ଶିଳ୍ପୀଠାରୁ ନ୍ୟୂନ ନଥିଲା ।

ସେହିସବୁ ଜିନିଷ ପତ୍ରର ମଧ୍ୟ ବଜାରରେ ଚାହିଦା ଥିଲା ।



# ବିଦ୍ୟାଳୟର ଖେଳ ପଡିଆରେ ଆମେ

କେବଳ ବିଦ୍ୟାଳୟ ନୁହେଁ, ବରଂ ଜାତିର ଚରିତ୍ର ଗଠନରେ ବିଦ୍ୟାଳୟର ଖେଳ ପଡିଆର ଅନନ୍ୟ ଭୂମିକା ଅଛି । ସେଇଥିପାଇଁ ଏକଦା ବିଲାତର ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ କହିଥିଲେ, "Britain could win the battle field of Waterloo in the playground of Eton."

ସେଦିନ ବିଦ୍ୟାଳୟର ଖେଳ ପଡିଆରେ ଆମେ ଦେଖିଲୁ ଯେ ଦୁଇଶ୍ରେଣୀ ଛାତ୍ରଙ୍କ ମଧ୍ୟରେ ଏକ ଫୁଟବଲ ମ୍ୟାଚ ଅନୁଷ୍ଠିତ ହେଉଅଛି । ଏହି ମ୍ୟାଚଟି ଦୁଇ ଦଳଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ମଧ୍ୟରେ ଅନୁଷ୍ଠିତ ହେଉଥିଲା ।

ବିଦ୍ୟାଳୟର ସମସ୍ତ ଛାତ୍ରଛାତ୍ରୀ ଏହି ପ୍ରତିଯୋଗିତାକୁ ବେଶ୍ ଉପଭୋଗ କରୁଥିଲେ । ଦର୍ଶକଙ୍କ ଭିଡ ଓ କୋଳାହଳ ମ୍ୟାଚର ଗୁରୁତ୍ୟକୁ ବେଶ୍ ବଢେଇ ଦେଇଥିଲା ।

ସେଦିନ ସମସ୍ତ କାର୍ଯ୍ୟ ସାରି ଫେରିବା ପୂର୍ବରୁ ଆମେ ଶିକ୍ଷକମାନଙ୍କୁ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ସାଧାରଣ ପ୍ରକୋଷ୍ଠ (Teachers' Common Room)ରେ ଭେଟିଥିଲୁ । ସେମାନଙ୍କ ପୋଷାକପତ୍ର ଅତି ସରଳଥିଲା । ସେମାନେ ଆମ ସହିତ ଆମ ଦେଶର ଶିକ୍ଷା ଓ ସମସ୍ୟା ସଂପର୍କରେ କିଛି ଆଲୋଚନା କରିଥିଲେ ।

ଆମର ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ସହିତ ଦେଖା ହୋଇ ପାରି ନଥିଲା । ସେ ବିଶେଷ କାର୍ଯ୍ୟ ବ୍ୟସ୍ତ ଥିଲେ ।

ସେଣ୍ଟଜୋସେଫ ଉଚ୍ଚବିଦ୍ୟାଳୟର ପରିବେଶ ଅତି ଉନ୍ନତ ଥିଲା । ଏକ ବିରାଟ ଦୋମହଲା ଘରେ ଉକ୍ତ ବିଦ୍ୟାଳୟଟି ପ୍ରାୟ ତିନିହଜାର ଛାତ୍ର ଛାତ୍ରୀଙ୍କର ଅଧ୍ୟୟନ ସ୍ଥଳୀ ଥିଲା । ଏହାଛଡା ଉପଯୁକ୍ତ ବିଜ୍ଞାନାଗାର, ଲାଇବ୍ରେରୀ , କ୍ୟାଣ୍ଟିନ୍ ଖେଳ ପଡିଆ ଆଦି ଥିବା ହେତୁ ଶିକ୍ଷାଦାନ ଓ ଶିକ୍ଷଣ ପ୍ରକ୍ରିୟା ଉନ୍ନତମାନର ଥିଲା ।



# ଚରିତ୍ର ଗଠନର କେନ୍ଦ୍ରବିନ୍ଦୁ : ବିଦ୍ୟାଳୟ

ବିଲାତରେ ସପ୍ତାହର ଦୁଇଦିନ ଶନିବାର ଓ ରବିବାର ହେଉଛି ଛୁଟିଦିନ । ଛୁଟିଦିନ ମାନଙ୍କରେ ଟେଲିଭିଜନରେ ବିଭିନ୍ନ କାର୍ଯ୍ୟକ୍ରମ ଦେଖିବା ମୋର ପ୍ରାୟ ଏକ ଅଭ୍ୟାସରେ ପରିଣତ ହୋଇଥିଲା ।

ଦିନେ ଗୋଟିଏ ଚ୍ୟାନେଲ୍ ଖୋଲୁ ଖୋଲୁ ମୁଁ ବିଦ୍ୟାଳୟ ସଂପର୍କୀୟ ଏକ କାର୍ଯ୍ୟକ୍ରମ ଦେଖିବାର ସୁଯୋଗ ପାଇଲି ।

ଏହି କାର୍ଯ୍ୟକ୍ରମରେ ବିଦ୍ୟାଳୟର ଶାନ୍ତି ଶୃଙ୍ଖଳା ରକ୍ଷା ଦିଗରେ ପ୍ରଧାନ ଶିକ୍ଷକଙ୍କ ଭୂମିକା ପ୍ରଦର୍ଶିତ ହୋଇଥିଲା । ବିଦ୍ୟାଳୟରେ ଶିକ୍ଷାର୍ଥୀର ଚରିତ୍ର ଗଠନ ଦିଗରେ ସେ କିପରି ସହାୟକ ହେଉଥିଲେ ତାହା ଦର୍ଶାଯାଇଥିଲା ।

ଦିନେ ଜନୈକ ପ୍ରଧାନ ଶିକ୍ଷକ ବିଦ୍ୟାଳୟର ବାରଣ୍ଡାରେ ପିଲାଟିଏ ସିଗାରେଟ୍ ଖାଇ ଖାଇ ଯିବାର ଦେଖିଲେ । ସେ ତତ୍କ୍ଷଣାତ୍ ସେହି ପିଲାଟି ପାଖକୁ ଆସିଲେ ଓ ବିଶେଷ ବିରକ୍ତି ପ୍ରକାଶ କରି କହିଲେ, “ତୁମେ ସିଗାରେଟ୍ ଖାଇ ବିଦ୍ୟାଳୟର ପରିବେଶକୁ ନଷ୍ଟକରୁଛ । ସେଥିପାଇ କ’ଣ ଟିକେ ହେଲେ ଲଜ୍ଜାବୋଧ କରୁନାହଁ ? ତୁମକୁ ଆଉଥରେ ଯଦି କୌଣସି ସ୍ଥାନରେ ସିଗାରେଟ୍ ଖାଇବାର ଦେଖିବି, ତେବେ ବିଦ୍ୟାଳୟରୁ ତଡି ଦେବି ।”

ବାସ୍ ! ଏତିକି କହି ସେ ସେ ସ୍ଥାନରୁ ଚାଲିଗଲେ ।

ବିଲାତ ଥଣ୍ଡା ଦେଶ ହୋଇଥିବାରୁ ସାଧାରଣତଃ ପିଲାମାନେ ବାପାମା’ଙ୍କ ସହିତ ବିୟର ପିଉଥିବାର ଦୃଶ୍ୟ ମୁଁ ଅନେକଥର ଦେଖିଥିଲି । ସେଠାରେ ସ୍ତ୍ରୀ ଲୋକମାନେ ବାଟରେ ଘାଟରେ ସିଗାରେଟ ଖାଇ ଚାଲୁଥିବା ଅତି ସାଧାରଣ କଥା । ତେଣୁ ମୋର ଧାରଣା ହୋଇଥିଲା ଯେ ପରିବାରର ସମସ୍ତେ ମିଶି ଧୂମପାନ କରୁଥିବେ ।

ଏ ସଂପର୍କରେ ଦିନେ ମୁଁ ମୋର ଶିକ୍ଷକ ଫିଦରସନଙ୍କୁ ପଚାରିଲି "ଆପଣଙ୍କ ଦେଶରେ ପିଲାମାନେ ପିତାମାତାଙ୍କ ସହିତ ବିୟର ପିଇଥାନ୍ତି । କିନ୍ତୁ ବିଦ୍ୟାଳୟରେ ପିଲାମାନଙ୍କୁ ସିଗାରେଟ୍ ଖାଇବାକୁ କାହିଁକି ମନା କରାଯାଏ ?"

ସେ ମୋତେ କହିଲେ, "ଆପଣଙ୍କ ଦେଶରୁ ଯଦି କୌଣସି ଗର୍ଭବତୀ ମହିଳା ଆମ ଦେଶକୁ କିଛିଦିନ ପାଇଁ ଆସନ୍ତି, ତେବେ ତାଙ୍କୁ ଡାକ୍ତର ପ୍ରଥମେ ନିୟମିତ ବିୟର ପିଇବା ପାଇଁ କହିଥାନ୍ତି । ଏପରି ବିୟର ପାନ ଉଭୟେ ମା ଓ ଶିଶୁର ସ୍ୱାସ୍ଥ୍ୟ ନିମନ୍ତେ ହିତକର ।"

"କିପରି ?" ମୁଁ ପଚାରିଲି ।

ସେ ପୁଣି ଆରମ୍ଭ କଲେ "ଆପଣଙ୍କ ଦେଶରେ ଆପଣମାନେ ସବୁବେଳେ ସୂର୍ଯ୍ୟକିରଣ ପାଉଛନ୍ତି । ତେଣୁ ସୂର୍ଯ୍ୟକିରଣରୁ ଭିଟାମିନ୍-D ଆପଣମାନେ ସିଧା ସଳଖ ପାଇଯାଉଛନ୍ତି । ଏଥିପାଇଁ ଆପଣମାନଙ୍କୁ କୌଣସି ମୂଲ୍ୟ ଦେବାକୁ ପଡୁନାହିଁ । ମାତ୍ର ଆମେ ତ ଏଠାରେ ଆପଣଙ୍କ ଭଳି ସୂର୍ଯ୍ୟକିରଣ ସହଜରେ ପାଉନାହୁଁ । ସବୁବେଳେ ଥଣ୍ଡାପାଗ ସହ ଆକାଶ ମେଘାଚ୍ଛନ୍ନ । ତୁଷାରପାତ ଏକ ସାଧାରଣ ଘଟଣା । ତେଣୁ ଦେହର ନିର୍ଦ୍ଦିଷ୍ଟ ତାପ ବଜାୟ ରଖିବା ପାଇଁ ଆମକୁ ବିୟର ଆଦି ପିଇବାକୁ ପଡେ । ଏଥିରୁ ଆମେ ଭିଟାମିନ୍ -D ପାଉ । ଏହା ନ ପିଇଲେ ଆମକୁ ଭିଟାମିନ୍ -D ଅଭାବ ଜନିତ ରୋଗ ରିକେଟ୍ସ ଓ ଅଷ୍ଟୋମାଲେସିଆ ଭୋଗିବାକୁ ପଡିବ । ଯଦି ଆପଣଙ୍କ ଦେଶରୁ ଆସୁଥିବା ଗର୍ଭବତୀ ମହିଳା ଏହା ନ ପିଅନ୍ତି, ତେବେ ତାଙ୍କଠାରୁ ଜନ୍ମ ହେବାକୁ ଥିବା ଶିଶୁଟି ବିକଳାଙ୍ଗ ହେବାର ବିଶେଷ ସମ୍ଭାବନା ଅଛି ।"

ସେଠାରେ ଉପସ୍ଥିତ ଥିବା ଜନୈକ ଭଦ୍ରବ୍ୟକ୍ତି ପଚାରିଲେ, "ମଦଭଳି ସିଗାରେଟ୍ କ'ଣ ସ୍ୱାସ୍ଥ୍ୟରକ୍ଷାରେ ସାହାଯ୍ୟ କରେ ନାହିଁ ?"

ଟିଉଟର ଫିଦରସନ କହିଲେ, " ନା, ସିଗାରେଟ୍‌ରେ ଅତ୍ୟଧିକ ପରିମାଣରେ ନିକୋଟିନ୍ ଥାଏ । ନିକୋଟିନ୍ ସ୍ୱାସ୍ଥ୍ୟ ପକ୍ଷରେ ଅତୀବ କ୍ଷତିକାରକ । ଏହା ମଣିଷର ପ୍ରାଣ କେନ୍ଦ୍ର ହୃତ୍‌ପିଣ୍ଡକୁ ଦୁର୍ବଳ କରେ । ଫୁସ୍‌ଫୁସ୍‌କୁ ଦୁର୍ବଳ କରେ ।

ତେଣୁ ପିଲାମାନଙ୍କୁ ଘରେ ଓ ବାହାରେ ସିଗାରେଟ୍ ଖାଇବାକୁ ମନା କରାଯାଇଥାଏ ।"

ସେଦିନ ଗାୟ ଫାଦରସନଙ୍କ ଶିଶୁର ସ୍ୱାସ୍ଥ୍ୟ ସଂପର୍କୀୟ ଆଲୋଚନା ଆମପାଇଁ ବିଶେଷ ଶିକ୍ଷଣୀୟଥିଲା ।

ବିଲାତର ବିଦ୍ୟାଳୟ ଗୁଡିକ ଯେ ଶିଶୁର ଚରିତ୍ର ଗଠନରେ ବିଶେଷ ଧ୍ୟାନ ଦେଉଛନ୍ତି ଏକଥା ପ୍ରଧାନଶିକ୍ଷକଙ୍କ ଆଚରଣରୁ ଅଧିକ ସ୍ପଷ୍ଟ ହୋଇ ଥିଲା ।



# ଆମ ଶିକ୍ଷାଦାତା : ଗାୟ ଫିଦରସନ

କାର୍ଲାଇଲରେ ଥିଲାବେଳେ ଜଣେ ଭଦ୍ରବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ, କାର୍ଯ୍ୟନିଷ୍ଠା, ସ୍ନେହ ଶ୍ରଦ୍ଧା ମୋତେ ସ୍ତମ୍ଭୀଭୂତ କରିଥିଲା । ସେ ଭଦ୍ର ବ୍ୟକ୍ତିଜଣଙ୍କ ଶିକ୍ଷାଦାତା ମିଷ୍ଟର ଗାୟ ଫିଦରସନ୍ ।

ଏଦନ୍‌ଭିଜନ ଷ୍ଟୁଡିଓରେ ପ୍ରଥମଦିନ ପାଦ ଦେଲାବେଳେ ତାଙ୍କ ସହିତ ମୋର ପରିଚିତ ହୋଇଥିଲା ।

ପ୍ରଥମ ସାକ୍ଷାତରେ ସେ ଆମ ହୃଦୟକୁ କିଣି ଦେଇଥିଲେ । ତାଙ୍କ ସହିତ ସହକାରୀ ଶିକ୍ଷାଦାତା ଆଣ୍ଡିଫ୍ରଡା, ରବର୍ଟଜନସନ, ଟୋନିଆଦି ଥିଲେ ।

ଦ୍ୱିତୀୟ ଦିନ ସେ ଆମକୁ ଆମ ଶିକ୍ଷା ସଂପର୍କୀୟ ଦୈନିକ କାର୍ଯ୍ୟକ୍ରମର ଏକ କମ୍ପୁଟର ପ୍ରସ୍ତୁତ ପୁସ୍ତକ ଦେଲେ । ପ୍ରତିଦିନ ଦୀର୍ଘ ତିନିମାସ ପାଇଁ ଆମେ କ'ଣ କ'ଣ କରିବୁ ତାହା ସେହି ପୁସ୍ତକରେ ଟିକିନିକି ଲେଖା ହୋଇଥିଲା । ଏହି ପୁସ୍ତକଟି ୪୫ ପୃଷ୍ଠାର ଥିଲା । ଆମ ଶିକ୍ଷାଲାଭର ଶେଷଦିନ ପର୍ଯ୍ୟନ୍ତ ସେ ସେହି ଅନୁସାରେ କାମ କରିଥିଲେ । ଦିନକ ପାଇଁ ଆମ ଶିକ୍ଷଣ କାମ କୌଣସିଦିନ କୌଣସି କାରଣରୁ ଅଟକି ନଥିଲା ।

ଆମ ପାଠ୍ୟକ୍ରମ ଆରମ୍ଭର ପୂର୍ବରୁ ଥିବା ଶିକ୍ଷକଙ୍କ କାର୍ଯ୍ୟକଳାପ ସେତେ ଭଲ ନଥିଲା ବୋଲି ଶୁଣିଲୁ । ସେ ଅନେକ ସମୟରେ ପ୍ରଶିକ୍ଷଣ ନେଉଥିବା ବ୍ୟକ୍ତି ବିଶେଷଙ୍କ ଉପରେ ବିରକ୍ତ ହେଉଥିଲେ । ଏହାଫଳରେ ଶିକ୍ଷାର୍ଥୀମାନେ ବିଶେଷ ହଇରାଣ ହେଉଥିଲେ । ସେମାନେ ମଧ୍ୟ ତାଙ୍କ ଜ୍ଞାନରୁ ବିଶେଷ କିଛି ଲାଭ ନେଇ ପାରୁ ନଥିଲେ । ତେଣୁ ସେ ସମୟର ପାଠ୍ୟକ୍ରମ ସରିବା ପରେ ପରେ ତାଙ୍କୁ ଏଦନ୍‌ଭିଜନ ଷ୍ଟୁଡିଓରୁ ବିଦାୟ ନେବାକୁ ପଡିଥିଲା ।



# ହେବାର କିଛି ନାହିଁ

ଦିନେ ଏକ କାର୍ଯ୍ୟକ୍ରମ ନିର୍ଦ୍ଦେଶ ଦେବାର ଦାୟିତ୍ୱ ମୋ ଉପରେ ଥିଲା । ସେଦିନ ଦୀର୍ଘ ସମୟ ଖଟିଖଟି ମୁଁ କ୍ଳାନ୍ତ ଅନୁଭବ କରି ବସି ପଡିଲି । ସତେ ଯେମିତି ଆଉ କିଛି କରି ପାରିବି ନାହିଁ । ସେହି ସମୟରେ ଗାୟ ଫିଦରସନ ମୋ ପାଖକୁ ଆସିଲେ । ସେ ମୋ ପିଠିକୁ ଟିକିଏ ଆଉଁଷି ଦେଲେ ଓ କହିଲେ, "ତୁମ ପାଖେ ପାଖେ ମୁଁ ଅଛି । ବ୍ୟସ୍ତ ହେବାର କିଛି ନାହିଁ ।

ଫିଦରସନ୍‌ଙ୍କ ସେହି କେଇପଦ ଆପଣାର କଥା ଶୁଣି ମୋର କ୍ଳାନ୍ତି ସଙ୍ଗେ ସଙ୍ଗେ ମେଣ୍ଟିଗଲା । ମୁଁ ଜାଣିଲି ଯେ ମୋ ପଛରେ ମୋର ଜଣେ ଆପଣାର ଲୋକ ସାହାଯ୍ୟ କରିବାକୁ ଅଛନ୍ତି ।

ମୁଁ ପୂର୍ବପରି ପୁଣି କାମରେ ସେଦିନ ଲାଗି ପଡିଥିଲି ।

ଗାୟଫିଦରସନଙ୍କ ଏପରି ବ୍ୟବହାରରୁ ମୁଁ ଗୋଟିଏ କଥା ଶିକ୍ଷା କଲି । ତାହାହେଲା ଛାତ୍ର ପ୍ରତି ଶିକ୍ଷକଙ୍କର ସହାନୁଭୁତି । ଟିକିଏ ସ୍ନେହ ଓ ସହାନୁଭୂତି ପାଇଲେ ଶିକ୍ଷକ ଛାତ୍ରକୁ ଦାନ କରୁଥିବା ଜ୍ଞାନର ମୂଲ୍ୟ ରହିବ ।

ନଚେତ୍ ଉଭୟଙ୍କ ମଧ୍ୟରେ କିଛି ଶୂନ୍ୟତା ସୃଷ୍ଟି ହେଲେ ଶିକ୍ଷଣକାର୍ଯ୍ୟ ବାଧାପ୍ରାପ୍ତ ହେବ ।



# ଶିକ୍ଷାଦାତାଙ୍କ ମନ୍ତବ୍ୟ : ଏଠିବି ନିଷ୍ଠୁର ଲୋକ ଅଛନ୍ତି

ଏଦନ୍‌ଭିଜନ ଷ୍ଟୁଡିଓରେ ପ୍ରବେଶ ଦ୍ୱାରରେ କେତୋଟି ଚେୟାର ପଡିଥାଏ । ଚେୟାର୍‌ର ଅଳ୍ପ ଦୂରରେ ଗୋଟିଏ କୋଣକୁ ହିଟରଟିଏ ଥାଏ । ସାଧାରଣତଃ ବାହାରୁ କୌଣସି ବ୍ୟକ୍ତି ଆସିଲାପରେ ହିଟର ପାଖରେ ହାତ ଗୋଡ ଦେଖାଇ ଦେହକୁ ଉଷୁମ କରିଥାନ୍ତି ।

ପ୍ରଥମେ ମୋର ଧାରଣା ଥିଲା ଯେ ଆମେ ବାହାରର ଲୋକ ହୋଇଥିବା ହେତୁ ଆମକୁ ବେଶୀ ଥଣ୍ଡା ହେଉଛି ଓ ଆମ ହାତ ଗୋଡ ଥରି ଯାଉଛି । ମାତ୍ର ପରେ ଲକ୍ଷ୍ୟ କଲିଯେ ସାହେବମାନେ ମଧ୍ୟ ସେଠାରେ ଆସି ହିଟର ପାଖରେ ନିଜ ହାତ ଗୋଡ ଦେଖାଇ ଉଷୁମ କରୁଥାନ୍ତି ।

ଥରେ ଆମ ଡାଇରେକ୍ଟର ରାୟ ଥମ୍ପସନ ଆସି ସେଠାରେ ନିଜ ହାତକୁ ହିଟର ପାଖରେ ଦେଖାଇଲେ । ଆମକୁ କହିଲେ, "ଏପରି କଲେ ଦେହକୁ ଶୀଘ୍ର ଥଣ୍ଡା ଧରିବ ନାହିଁ ।"

ବିଲାତରେ ସକାଳ ନଅଟା ବେଳକୁ ଭୋର ହୋଇଥାଏ । ଆମ ଦେଶରେ ଶନିବାର ଦିନ ଅଧିକାଂଶ ସ୍ଥାନରେ ସକାଳୁ ସକାଳୁ ପିଲାମାନେ ବିଦ୍ୟାଳୟକୁ ଗଲାଭଳି ସେଠାକାର ପିଲାମାନେ ଅତି ସକାଳୁ ସକାଳୁ ବିଦ୍ୟାଳୟକୁ ଯାଇଥାନ୍ତି ।

ଆମ୍ଭେମାନେ ଅତିଭୋର ଅର୍ଥାତ୍ ସକାଳ ଆଠଟା ବେଳକୁ ଉଠି ଆମର ନିତ୍ୟକର୍ମ ସାରୁ ଓ ନଅଟାବେଳେ ଯାଇ ଆମ ଶିକ୍ଷା କେନ୍ଦ୍ରରେ ପାଠପଢୁ । ଶିକ୍ଷା କେନ୍ଦ୍ରରେ ପ୍ରବେଶ ଦ୍ୱାରରେ ପହଞ୍ଚିଲା ପରେ ଆମ ଶ୍ରେଣୀକୁ ଅଫିସର ଗୋଟିଏ ଘର ଭିତରଦେଇ ଯିବାକୁ ପଡେ । ଜଣେ ଚାହିଁଲେ ଦ୍ୱାରର ଅନ୍ୟପଟ

ଦେଇ ଶୀତ ଓ ଥଣ୍ଡା ମଧ୍ୟରେ ଶ୍ରେଣୀ ଗୃହରେ ପହଞ୍ଚିପାରିବ । ମାତ୍ର ଆମ୍ଭେ ଶିକ୍ଷାକେନ୍ଦ୍ରର ବାହାରେ ଆମ ଛତା ଓ ଅର୍ଦ୍ଧଭିଜା ପୋଷାକପତ୍ର ରଖିଥିବା ହେତୁ ଅଫିସ ଭିତର ଦେଇ ଷ୍ଟୁଡିଓକୁ ନଗଲେ ଅନ୍ତଟିକିଏ ତିନ୍ତିଥାଉ । ମଝିରେ ମଝିରେ ଆମ ଦେହରେ ଥଣ୍ଡା ପବନ ବାଜିଥାଏ ଓ ଗୁଣ୍ଡ ଗୁଣ୍ଡ ହୋଇ ତୁଷାରକଣା ପଡିଥାଏ ।

ଅଫିସର ଦାୟିତ୍ୱରେ ଦୁଇତିନିଜଣ ଭଦ୍ର ମହିଳା ଥିଲେ । ସେମାନେ ହେଲେ ଅଫିସ ସେକ୍ରେଟେରୀ କ୍ରିଷ୍ଟାଇନ୍ ରୋଗରସନ, କାର୍ଯ୍ୟକ୍ରମର ଉପସ୍ଥାପିକା ଆନେ ଓ ଆଉ କେତେ ଜଣ ।

ଦିନେ ଆମେ ଦ୍ୱାର ଦେଶରେ ପହଞ୍ଚି ପୂର୍ବବତ୍ ଆମର ରେନ୍‌କୋଟ ଖୋଲିଲୁ ଓ ହିଟର ପାଖରେ ଦେହହାତ ଉଷୁମ କଲୁ । ଆମ ଶ୍ରେଣୀ ଗୃହକୁ ଅଫିସ ଭିତର ଦେଇ ଯିବା ପୂର୍ବରୁ ଦେଖିଲୁ ଯେ ଗୋଟିଏ କାଗଜରେ ବଡ଼ ବଡ ଅକ୍ଷରରେ ଲେଖା ହୋଇଛି " ଶିକ୍ଷାର୍ଥୀମାନେ ଅଫିସ ଭିତର ଦେଇ ଶ୍ରେଣୀ ଗୃହକୁ ଯାଇ ପାରିବେ ନାହିଁ ।"

ତେଣୁ ସେଦିନ ଆମକୁ ପଦାପଟର ପାଣି ପବନ ସହି ଯିବାକୁ ପଡିଲା । ପ୍ରାୟଦିନକୁ ତିନି ଚାରିଥର ଶ୍ରେଣୀଗୃହରୁ ବାହରକୁ ଓ ବାହାରୁ ଶ୍ରେଣୀ ଗୃହକୁ ଆସିବାକୁ ପଡୁଥିଲା ।

ଦିନେ ମୁଁ ଆମ ଶିକ୍ଷାନୁଷ୍ଠାନର ପ୍ରବେଶଘରେ ବସିଥିଲା ବେଳେ ସେଠାରେ ମୋର ଶିକ୍ଷାଦାତା ଗାୟ ଆସି ପହଞ୍ଚିଲେ । ସେ ମୋତେ କହିଲେ, " ବ୍ରହ୍ମା ଆସ, ତୁମ ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ପାଇଁ କେତେକ ମ୍ୟାପ୍ ଓ ଚାର୍ଟ (Chart) ତିଆରି କରିବା ।"

ଏହା କହି ଗାୟ ଫିଦରସନ ଅଫିସ ଭିତରଦେଇ ଶ୍ରେଣୀ ଗୃହକୁ ଯିବାକୁ ଉଦ୍ୟତ ହେଲେ । ମୁଁ ପୂର୍ବ ନୋଟିସ ମୁତାବକ ବାହାରପଟ ଦେଇ ଶ୍ରେଣୀ ଗୃହକୁ ଯିବାକୁ ଗଲାବେଳେ ସେ ମୋତେ ଲକ୍ଷ୍ୟ କରି କହିଲେ, " ଓଃ ବ୍ରହ୍ମା,

ଏଠାରେ କିଛି ନିଷ୍ଠୁର ଲୋକ ଅଛନ୍ତି । ପଦାବାଟ ଦେଇ ଗଲେ ତୁମକୁ ଥଣ୍ଡା ଧରିପାରେ । କିଛି ନଭାବି ଏହି ଅଫିସ ଭିତର ଦେଇ ଆସ ।"

ଗାୟ ଫିଦରସନ ସେହି ଅନୁଷ୍ଠାନର ଜଣେ ଉଚ୍ଚ ପଦସ୍ଥ ଅଫିସର ଥିଲେ । ତେଣୁ ମୁଁ ସଙ୍ଗେ ସଙ୍ଗେ ତାଙ୍କ କଥା ମାନିଲି । ସେହିଦିନ ଠାରୁ ମୁଁ ଓ ମୋର ବନ୍ଧୁମାନେ ଆଉ ବାହାର ବାଟେ ନଯାଇ ଅଫିସ ବାଟେ ଗଲୁ । ସେଦିନ ଆମର ଧାରଣା ହେଲା ଯେ ଏପରି ଲେଖା ଆମର ଡାଇରେକ୍ଟର ରାୟ ଥମ୍ପସନ ଦେଇନଥିଲେ । ଆମ ଶିକ୍ଷାଦାତା ଗାୟଙ୍କ ଦ୍ୱାରା ତାହା ହୋଇ ଥିଲେ ସେ ମୋତେ ଆଉ ସେ ଅଫିସ ବାଟ ଦେଇ ଯିବାକୁ କହି ନଥାନ୍ତେ ।

ତେବେ ମୁଁ ଚିନ୍ତାକଲି ସେହି ନିଷ୍ଠୁର ଲୋକମାନେ କିଏ ହୋଇଥିବେ ?

କିଛିଦିନ ପରେ ସେମାନଙ୍କ ସ୍ୱରୂପେ ଆପେଆପେ ପଦାରେ ପଡିଗଲା ।

ସେମାନେ ଆଉ କେହି ନଥିଲେ, କେବଳ ସେହି ଅଫିସରେ କାର୍ଯ୍ୟ କରୁଥିବା କେତେକ ଭଦ୍ର ମହିଳା ଥିଲେ ।

ଥରେ ଆମେ ଏକ ମାଧ୍ୟମିକ ବିଦ୍ୟାଳୟରେ ଏକ ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ଫେରିଲା ପରେ ସେମାନେ ଆମକୁ କହିଲେ, "ଆପଣମାନଙ୍କୁ ଗାୟ ଦିନସାରା କେତେ ଖଟେଇଲେଣି । ଆପଣମାନଙ୍କ ଦେହ କଳାକାଠ ପଡିଗଲାଣି । ଝଡି ମଧ୍ୟ ଗଲେଣି । ତେଣୁ ତାଙ୍କ ବିରୋଧରେ ଆପଣ କାହିଁକି ଡାଇରେକ୍ଟରଙ୍କ ପାଖରେ ଅଭିଯୋଗ କରୁନାହାଁନ୍ତି ?"

ସେମାନଙ୍କ କଥା ଶୁଣି ମୁଁ ଉପସ୍ଥିତ ବୁଦ୍ଧି ଖଟାଇ କହିଲି, "ଆପଣମାନେ ଜାଣନ୍ତି ଯେ ମୁଁ ଏକ ମାଧ୍ୟମିକ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନର ଅଧ୍ୟାପକ । ତେଣୁ ଏଠାକାର ମାଧ୍ୟମିକ ବିଦ୍ୟାଳୟ ଓ ଶିକ୍ଷକମାନଙ୍କ କାର୍ଯ୍ୟ ସଂପର୍କରେ ପ୍ରତ୍ୟକ୍ଷ ଧାରଣା କରିବା ପାଇଁ ମୋ ମନରେ ଆଗ୍ରହ ଥିଲା । ମୁଁ ମଧ୍ୟ ଗାୟଙ୍କୁ କାର୍ଲଲାଇଲର ଏକ ମାଧ୍ୟମିକ ବିଦ୍ୟାଳୟ ବୁଲାଇ ଦେଖାଇବାକୁ ଅନୁରୋଧ କରିଥିଲି । ତେଣୁ ସେ ମୋତେ ଓ ମୋ ସାଥୀମାନଙ୍କୁ ସେଠାକୁ ନେଇ ଆମ

ଅନୁରୋଧ ରକ୍ଷା କରିଛନ୍ତି । ଆମେ ମାଧ୍ୟମିକ ବିଦ୍ୟାଳୟକୁ ନେଇ ଏକ ଶିକ୍ଷା କାର୍ଯ୍ୟକ୍ରମ କିପରି ହୁଏ, ତାହା ଶିକ୍ଷା କଲୁ ।”

ମୋ କଥାଶୁଣି ସେମାନେ ନୀରବ ରହିଲେ ।

କିନ୍ତୁ ମୋର ଜଣେ ବନ୍ଧୁ ବିରକ୍ତି ପ୍ରକାଶ କରି କହିଲେ, “ଆମ ଦେଶରେ ଆମେ ହେଉଛୁ ଏକ ଏକ ଉଚ୍ଚ ପଦସ୍ଥ ଅଫିସର । କେତେବେଳେ କାହା ସମ୍ପର୍କରେ କାହାକୁ କ’ଣ କୁହାଯିବ, ତାହା ଆମକୁ ବେଶ୍ ଜଣା ।”

ବାସ୍ ! ଏତିକିରେ ସେ ଭଦ୍ରମହିଳାମାନେ ନୀରବ ରହିଲେ । ସେହିମାନେ ହିଁ ଥିଲେ ସେ ଅନୁଷ୍ଠାନର ନିଷ୍ଠୁର ସ୍ୱଭାବର ଲୋକ ।



# ସାର୍‌ଜନଙ୍କ ପ୍ରିୟ ସାଥୀ ଡିକ୍

ଦିନେ ମୁଁ କାର୍ଲଲାଇଲର ମୁଖ୍ୟ ରାସ୍ତାର ଫୁଟ୍‌ପାଥ୍ ଉପରେ ବୁଲୁଥିଲି ।

ମୋ ସହିତ ରାୟଥମ୍ପସନଥିଲେ ।

ଏହି ସମୟରେ ସେ ମୋତେ କହିଲେ, "ବ୍ରହ୍ମା ଟିକେ ଅପେକ୍ଷା କର ଗୋଟିଏ ଦୃଶ୍ୟ ଦେଖିବ ।"

କାର୍ଲଲାଇଲ୍ ରାସ୍ତାରେ ଅପରପାର୍ଶ୍ୱରେ ଥିବା ଫୁଟ୍‌ପାଥ ଉପରେ ଥିବା ଜଣେ ବୃଦ୍ଧ ଓ ଗୋଟିଏ କୁକୁରକୁ ଦେଖାଇ ରାୟ ଥମ୍ପସନ କହିଲେ "ସେ ବୃଦ୍ଧ ବ୍ୟକ୍ତିଜଣଙ୍କ ହେଉଛନ୍ତି ଜଣେ ଅନ୍ଧ । ତାଙ୍କର ସାଥୀ ହେଉଛି ସେଇ କୁକୁର । ତା'ର ନାମ ଡିକ୍ । ତୁମେ ଲକ୍ଷ୍ୟକର କେମିତି ସତର୍କତାର ସହିତ ଡିକ୍ ସାରଜନଙ୍କୁ ରାସ୍ତା ପାରି କରାଉଛି ।"

ମୁଁ ଦେଖିଲି କାର୍ଲଲାଇଲର ସେହି ମୁଖ୍ୟରାସ୍ତାରେ ବହୁ ଗାଡିମଟର ଯିବା ଆସିବା କରୁଅଛି । ଡିକ୍ ସେହିସବୁ ଚଳମାନ ଗାଡିଗୁଡିକ ଉପରେ ସତର୍କ ଦୃଷ୍ଟି ରଖିଛି ।"

କିଛି ସମୟ ଅତିବାହିତ ହେଲା । ଡିକ୍ ଲକ୍ଷ୍ୟକଲା ଯେ ରାସ୍ତାର କିଛିଗାଡି ପଳେଇ ଗଲେଣି । ଆଉ କିଛି ଆସିବାକୁ ପଞ୍ଚସାତ ମିନିଟ୍ ବାକୀ ଅଛି ।"

ସେହି ସମୟ ଥିଲା ଡିକ୍ ପାଇଁ ସୁବର୍ଣ୍ଣ ସୁଯୋଗ । ସେହି ସମୟରେ ଡିକ୍ ରାସ୍ତାପାରି ହେବାକୁ ଲାଗିଲା । ଡିକ୍‌ର ବେକର ବେଲଟ୍‌ଟିକୁ ସାର୍ ଜନ ଧରିଥିଲେ । ତାଙ୍କ ହାତ ଟାଣି ହେଲା । ସେ ଆଉ କାଳ ବିଳମ୍ବ ନ କରି ରାସ୍ତା ପାରିହେଲେ ।

ଏହି ଚମତ୍କାର ଦୃଶ୍ୟ ମୁଁ ପୂର୍ବରୁ କେବେ ଦେଖି ନଥିଲି ।

ମୋତେ ଲକ୍ଷ୍ୟକରି ରାୟ ଥମ୍ପସନ କହିଲେ, "ଏହି କୁକୁରଟି ସାର ଜନଙ୍କୁ ବିଲାତର ଏକ କୁକୁର ପ୍ରଶିକ୍ଷଣ କେନ୍ଦ୍ରରୁ ମିଳିଛି । ପୂର୍ବରୁ କୁକୁରଟିକୁ କେତେକ କାର୍ଯ୍ୟ ସଂପାଦନ କରିବା ପାଇଁ ତାଲିମ୍ ଦିଆ ଯାଇଅଛି । ସାରଜନ ଯଦି ତାକୁ କହିବେ ପୋଷ୍ଟ ଅଫିସ ନେବା ପାଇଁ ସେ ତାଙ୍କୁ ସେଠାକୁ ନେବ । ବ୍ୟାଙ୍କ କିମ୍ବା ଦୋକାନ୍‌କୁ ଯିବାକୁ ଚାହିଁଲେ ସେ ଯିବ ।"

ମୁଁ ପଚାରିଲି, "କୁକୁରଟି କ'ଣ କେବେ ସାର ଜନଙ୍କ ନିର୍ଦ୍ଦେଶ ମାନିବାରେ ହେଳା କରୁନାହିଁ ?"

ମୋତେ ରାୟ ଥମ୍ପସନ କହିଲେ "ନା, ସେ ସବୁ ବେଳେ ତାଙ୍କ ନିର୍ଦ୍ଦେଶ ମାନେ । ଯଦି କେବେ ନିର୍ଦ୍ଦେଶ ନ ମାନିବ ତାହା କହିହେବ ନାହିଁ । ତେଣୁ ତାଙ୍କ ପାଖକୁ କୁକୁର ତାଲିମ କେନ୍ଦ୍ରର ନିର୍ଦ୍ଦେଶକଙ୍କ ପାଖରୁ ଏକ ଚିଠି ଆସିଛି । ସେଥିରେ ଲେଖାଅଛି ଯେ ଯଦି କେବେ ସେ ତାଙ୍କ ନିର୍ଦ୍ଦେଶ ନ ମାନେ ତେବେ ତାକୁ ତାଙ୍କ ସଂସ୍ଥାକୁ ଫେରେଇ ଦେବାପାଇଁ । ତାହା କଲେ, ସେ ଆଉ ଗୋଟିଏ ତାଲିମ ପ୍ରାପ୍ତ କୁକୁର ତାଙ୍କ ସଂସ୍ଥାରୁ ପାଇବେ ।"

ସେଦିନ ଅତି ପାଖରୁ ଡିକ୍‌କୁ ଦେଖି ମୋତେ ଖୁବ୍ ଖୁସି ଲାଗିଥିଲା ।

ସାର ଜନଙ୍କ ଆଖି ନଥିଲେ ମଧ୍ୟ ଡିକ୍‌ର ଆଖି ତାଙ୍କର ଆଖି ଭଳି କାମ କରୁଥିଲା ।



# ଏମିତି ବି ହୁଏ : ବେଙ୍ଗର ପାଟିରେ ସାପ

ସେଦିନ ଛୁଟିଥାଏ । ବିଶେଷ କାମ ନଥାଏ । ଗୋଟିଏ ସପ୍ତାହର ଲଗାତର ପରିଶ୍ରମ ପରେ ବହିପତ୍ର ପଢ଼ିବାକୁ ମନରେ ଆଗ୍ରହ ଆସୁ ନଥାଏ । ଭାବିଲି କାର୍ଲଲାଇଲର ଆଖପାଖ ଅଞ୍ଚଳରେ ଟିକିଏ ବୁଲି ଆସିବି ।

ବୁଲୁ ବୁଲୁ ଗୋଟିଏ ପୋଖରୀ କୂଳରେ ପହଞ୍ଚିଲି । ଦେଖିଲି ପୋଖରୀରେ ଅଳ୍ପ ପାଣି ଅଛି । କିଛି ବେଙ୍ଗ ମଧ୍ୟ ପୋଖରୀ କୂଳରେ ଏକଡ ସେକଡ ହେଉଥାନ୍ତି ।

ଏହି ସମୟରେ ଗୋଟିଏ ବଡ ସାପ ପୋଖରୀ କୂଳର ଏକ ଗାତରୁ ବାହାରି ଆସିଲା । ସେ ସାପଟି ଏଣିକି ତେଣିକି ସତର୍କତାର ସହିତ ଚାହିଁଲା । ହଠାତ୍ ଗୋଟିଏ ବେଙ୍ଗ ଉପରେ ଲମ୍ଫପ୍ରଦାନ କଲା ଓ କ୍ଷଣିକ ମଧ୍ୟରେ ବେଙ୍ଗଟିକୁ ପାଟି ଭିତରକୁ ଟାଣି ନେଇ ଗିଳି ଦେଲା ।

ଏହିପରି ତିନୋଟି ବେଙ୍ଗ ଖାଇ ଦେଲା ।

ସେହି ସମୟରେ ମୁଁ ଲକ୍ଷ୍ୟକଲି ଯେ ପୋଖରୀର ଆର ପାର୍ଶ୍ୱରେ ଏକ ବଡବେଙ୍ଗ ମଧ୍ୟ ତା'ର ଖାଦ୍ୟ ଯୋଗାଡରେ ଲାଗି ପଡିଛି । ସୁବିଧା ସୁଯୋଗ ଦେଖି ନିଜର ଶୀକାରଗୁଡିକ ଉପରେ ଜିଭ ପକାଉଛି । ସେହି ଜିଭରେ ଶିକାରଗୁଡିକ ତା'ର ପାଟି ଭିତରକୁ ଚାଲି ଯାଉଛନ୍ତି ।

କିଛି ସମୟ ପରେ ସାପଟିର ନଜର ସେହି ବେଙ୍ଗ ଉପରେ ପଡିଲା ।

ସେ ମଧ୍ୟ ତାକୁ ଖାଇବାର ସୁଯୋଗକୁ ଆଉ ହାତଛଡା କରିବାକୁ ଚାହିଲା ନାହିଁ ।

ସାପଟି କାଳ ବିଳମ୍ବ ନକରି ପୋଖରୀର ଆର ପାର୍ଶ୍ୱକୁ ଚାଲିଲା ଓ ସତର୍କତାର ସହିତ ବେଙ୍ଗଟି ଉପରେ ଲମ୍ଫପ୍ରଦାନ କଲା ।



ମାତ୍ର ବେଙ୍ଗଟି ସହଜରେ ସାପଟିକୁ ଛାଡିଲା ନାହିଁ । ସଙ୍ଗେ ସଙ୍ଗେ ତା'ର ଦେହ ଫୁଲି ଉଠିଲା । ଆଖି ଦୁଇଟି ବଡ ହୋଇଗଲା । ସେ ମଧ୍ୟ ସାପ ଦେହର ଗୋଟିଏ ଅଂଶକୁ କାମୁଡି ଧରିଲା ।

ତା'ପରେ ଚାଲିଲା ବେଙ୍ଗ ଓ ସାପ ମଧ୍ୟରେ ଘମାଘୋଟ ଯୁଦ୍ଧ । ଗଡାପଡା ମଧ୍ୟରେ ପୋଖରୀ କୂଳର ଅନ୍ୟ ଜୀବମାନେ ନିଜ ନିଜର ଆଶ୍ରୟ ସ୍ଥଳୀରେ ଲୁଚିଗଲେ ।

ଏପରି ଦୃଶ୍ୟଟିଏ ମୁଁ ଆଗରୁ କେବେ ଦେଖି ନଥିଲି । ସାପ ଓ ବେଙ୍ଗ ଲଢାଲଢି ଦୃଶ୍ୟ ଦେଖି ମୋ ଦେହ ଶୀତେଇ ଉଠିଲା । ବେଙ୍ଗଟିର ମୃତ୍ୟୁ ପାଖାପାଖି, ତଥାପି ଜୀବନ ବଞ୍ଚାଇବା ପାଇଁ କି ଆପ୍ରାଣ ଉଦ୍ୟମ !

ମାତ୍ର ବେଙ୍ଗଟିର ସେହି ଆପ୍ରାଣ ଉଦ୍ୟମ ସଫଳ ହେଲା । ଆଖି ପିଛୁଳାକେ ସେ ସାପଟିକୁ ନିଜର ସମସ୍ତ ଶକ୍ତି ସଞ୍ଚୟକରି ଗଡ ଗଡ କରିଦେଲା । ଆମେ ମୁଡି ଖାଇଲାଭଳି ବେଙ୍ଗଟି ଏତେ ବଡ ସାପଟିକୁ ଚୋବେଇ ଚୋବେଇ ଖାଇ ଦେଲା ।

ଏଣିକି ବେଙ୍ଗ ପେଟରେ ସାପ ସହିତ ସାପ ଆଗରୁ ଖାଇଥିବା ବେଙ୍ଗ ତିନୋଟି ମଧ୍ୟ ଖାଦ୍ୟ ହୋଇଗଲେ ।

ଏହି ରୋମାଞ୍ଚକର ଦୃଶ୍ୟ ଓ ନୂତନ ଅନୁଭୂତି ମୋତେ ସେହି ଜାତିର ବେଙ୍ଗଟି ସଂପର୍କରେ ଅଧିକ ତଥ୍ୟ ଜାଣିବା ପାଇଁ ପ୍ରେରଣା ଦେଲା ।

ପରେ ଜାଣିଲି ଯେ ସେ ପ୍ରକାରର ବେଙ୍ଗକୁ ପ୍ରାଣୀବିତ୍ (Zoologist) ବୁଲ୍ ଫ୍ରଗ (Bull Frog) ନାମରେ ନାମିତ କରିଛନ୍ତି ।

ବାସ୍ତବିକ୍ ବେଙ୍ଗମାନଙ୍କ ମଧ୍ୟରେ ସେହି ବେଙ୍ଗଟି ହେଉଛି ଷଣ୍ଢବେଙ୍ଗ ।

ବଡ ନିର୍ଭୀକ ଓ ସାହସୀ ମଧ୍ୟ । ସାଧାରଣତଃ ଏହି ଧରଣର ବଡବଡ ବେଙ୍ଗମାନେ ଉତ୍ତର ଆମେରିକାରେ ବାସ କରିଥାନ୍ତି ।



# ଜୀବନରେ ପ୍ରଥମ ଥର ଦୟା ପାଇଥିବା ପିଲାଟି ସମ୍ପର୍କରେ

ଥରେ ମୁଁ ଏଡେନ୍ ଭିଜନ ଷ୍ଟୁଡିଓରେ ଟେଲିଗ୍ରାଫ (The Telegraph) ଖବରକାଗଜ ବସି ପଢୁଥିଲି । କାଗଜର ପୃଷ୍ଠା ଓଲଟାଉ ଓଲଟାଉ ମୋର ନଜର ଗୋଟିଏ ସମ୍ବାଦ ଉପରେ ପଡିଲା । ସମ୍ବାଦଟି ଥିଲା ଏହି ପରି : ପିଲାଟି ଯାହାକୁ ପ୍ରଥମେ ଦୟା ପ୍ରଦର୍ଶନ କରାଗଲା ।

ସେ ଘଟଣାଟି ହେଲା :

ବିଲାତର ଏକ ପାହାଡିଆ ଅଞ୍ଚଳରେ ପିଲାଟିଏ ତାର ବାପା ଓ ମା'ଙ୍କ ସହିତ ବାସ କରୁଥିଲା । ମା' ମରିଗଲା ପରେ ବାପା ଦ୍ୱିତୀୟ ବିବାହ କରିଥିଲେ । ବିମାତା ଆସିଲା ପରେ ପିଲାଟିର ଦୁଃଖ ବଢିଯାଇଥିଲା ।

ପିଲାଟିକୁ ବିମାତା ଜଣକ ବିଭିନ୍ନ ପ୍ରକାର ଅତ୍ୟାଚାର କରୁଥିଲେ । ସେ ତାକୁ ମେଣ୍ଢା ଚରାଇବାକୁ ପଠାଉଥିଲେ । ଗଲାବେଳେ ତାକୁ ଖାଦ୍ୟ ଦେଉ ନଥିଲେ । ଶୀତରୁ ରକ୍ଷା ପାଇବା ପାଇଁ କୌଣସି ପ୍ରକାରର ଶୀତ ପୋଷାକ ମଧ୍ୟ ପିଲାଟିକୁ ଦିଆଯାଉନଥିଲା । ଏପରିକି ଘରେ ଦୁଇତିନି ଦିନ ଉପବାସରେ ଛାଡି ଦିଆଯାଉଥିଲା ।

ଅତ୍ୟାଚାର ଏପରି ବଢିଯାଇଥିଲା ଯେ ଟିକିଏ କଥାରେ ତାକୁ ଅମାନୁଷିକ ଶାରୀରିକ ଦଣ୍ଡ ମଧ୍ୟ ଦିଆଯାଉଥିଲା । ମା'ଙ୍କ ସହିତ ବାପା ମଧ୍ୟ ପିଲାଟିକୁ ଅତ୍ୟାଚାର କରିବାକୁ ଭୁଲୁ ନଥିଲେ ।

ପିଲାଟିକୁ ଘରେ ଏକ କୋଠରୀରେ ଚାରି ପାଞ୍ଚଦିନ ଆବଦ୍ଧ କରି ରଖାଯାଇଥିଲା । ଉପଯୁକ୍ତ ଖାଦ୍ୟ ଓ ପାନୀୟ ମଧ୍ୟ ଦିଆଯାଇ ନ ଥିଲା ।

ଥରେ ପିଲାଟି ମନରେ ବାପା ଓ ମା'ଙ୍କ ପ୍ରତି ପ୍ରତିହିଂସା ମନୋଭାବ ଦେଖାଦେଲା । ସେ ସବୁଦିନେ ଅତ୍ୟାଚାରିତ ହେବା ଅପେକ୍ଷା ସେମାନଙ୍କୁ

ସବୁଦିନ ପାଇଁ ଶେଷ କରିଦେବା ପାଇଁ ନିଷ୍ପତ୍ତି ନେଲା । ସେଥିପାଇଁ ସେ ସେମାନଙ୍କୁ କିପରି ହତ୍ୟା କରିବ ଯୋଜନାଟିଏ ତିଆରି କରିଲା ।

ଦିନେ ଉପରବେଳା ପିଲାଟିର ବାପ ମା' କାମରୁ ଫେରୁଥିଲେ । ସେ ଫେରିବା ବାଟରେ ଲୁଚିକରି ଥାଏ । ସେମାନେ ଆସୁଥିବା ସମୟରେ ସେମାନଙ୍କ ମୁଣ୍ଡକୁ ଲକ୍ଷ୍ୟକରି ପଥର ଖଣ୍ଡ ଫୋପାଡିଲା । ପଥର ମାଡରେ ସେମାନେ ଚେତାଶୂନ୍ୟ ହୋଇ ପଡିଲେ । ତା'ପରେ ପିଲାଟି ବଡ ପଥର ଖଣ୍ଡରେ ବାପାମାଆ ଦୁଇଜଣଙ୍କୁ ମାରିଦେଲା ।

ହତ୍ୟା ଅଭିଯୋଗରେ ପିଲାଟିର ଦୀର୍ଘ ପାଞ୍ଚବର୍ଷଧରି ବିଚାର ଚାଲିଲା । ବିଚାରକଙ୍କ ପାଖରେ ପିଲାଟି ଉପରେ ହୋଇଥିବା ସମସ୍ତ ଅତ୍ୟାଚାରର ବିବରଣୀ ମଧ୍ୟ ଉପସ୍ଥାପିତ ହୋଇଥିଲା । ସେ ସମସ୍ତ ବିବରଣୀକୁ ଦେଖି ବିଚାରକ ଯେଉଁ ସତ୍ୟରେ ଉପନୀତ ହେଲେ ତା'ର ସାର ମର୍ମ ହେଲା:

ପିଲାଟିକୁ ଲାଳନ ପାଳନ କରିବା ପିତାମାତାଙ୍କର ଦାୟିତ୍ୱ । ତାକୁ ସ୍ନେହ ଓ ଶ୍ରଦ୍ଧାର ସହିତ ବଢାଇବା ମଧ୍ୟ ସେମାନଙ୍କର ପବିତ୍ର କର୍ତ୍ତବ୍ୟ । ମାତ୍ର ସେ ପିତାମାତା ଦ୍ୱୟ ତାହା କେବଳ ତ ଭୁଲି ନଥିଲେ, ବରଂ ପ୍ରତିଦିନ ପିଲାଟି ଉପରେ ଅମାନୁଷିକ ଅତ୍ୟାଚାର ଚଳାଇଥିଲେ । ସେମାନଙ୍କ କାର୍ଯ୍ୟ ଶିଶୁର ଅଧିକାର ଓ ମାନବିକ ଅଧିକାର ବିରୋଧରେ ଥିଲା । ତେଣୁ ନିଜର ସ୍ଥିତି ଓ ଅଧିକାର ସୁରକ୍ଷାଦୃଷ୍ଟିରୁ ପିଲାଟିର କାର୍ଯ୍ୟ ସ୍ୱଭାବିକ ଥିଲା ।

ଏହିସବୁ ଦୃଷ୍ଟି କୋଣରୁ ବିଚାରକ ପିଲାଟିକୁ ଦୟା ପ୍ରଦର୍ଶନ କରିଥିଲେ ଓ ତା'ର ଅପରାଧ ପାଇଁ ତାକୁ କ୍ଷମା ଦେଇଥିଲେ ।

ବିଚାରକଙ୍କ ଏପରି ବିଚାରକୁ ବିଲାତର ସବୁ ଶ୍ରେଣୀର ଲୋକ ଓ ଜନମଙ୍ଗଳ ସଂସ୍ଥା ସ୍ୱାଗତ କରିଥିଲେ ।

ସେଥିପାଇଁ ଅଧିକାଂଶ ଖବରକାଗଜ ତାଙ୍କର ପ୍ରଥମ ପୃଷ୍ଠାରେ ବଡ ବଡ ଅକ୍ଷରରେ ଛାପିଥିଲେ: The child who is granted mercy for the first time.

ବିଚାରକଙ୍କ ଏପରି ବିଚାର ଏକ ସର୍ବୋତ୍ତମ ନ୍ୟାୟ ଛଡା ଆଉ କ'ଣ ବା ହୋଇପାରେ !



# ବିଦାୟ ପର୍ବର ଅୟମାରମ୍ଭ

ଚାହୁଁ ଚାହୁଁ ତିନୋଟି ମାସ ବିତିଗଲା । ଆମର ଶିକ୍ଷାଦାନ ସରିଆସିଲା ।

ଆମକୁ ଶିକ୍ଷା ସଂପର୍କୀୟ ପ୍ରମାଣପତ୍ର ଦେବା ଦିନ ଆମ ଡାଇରେକ୍ଟର ଥମ୍ପସନ କହିଲେ, ଆଉ ଦିନେ ଦୁଇଦିନ ମଧ୍ୟରେ ଆପଣମାନେ କାର୍ଲଲାଇଲ ଛାଡିଯିବେ । ଆସିଲା ପରେ ମେୟରଙ୍କୁ ସାକ୍ଷାତ କରିଥିଲେ । ପୁଣି ବିଦାୟ ବେଳେ ମଧ୍ୟ ସାକ୍ଷାତ କରିବେ । ଏହା ହେଉଛି ପରମ୍ପରା । ତେଣୁ ଆସନ୍ତାକାଲି ଦିନ ବାରଟାବେଳେ ମେୟରଙ୍କ ସହିତ ସାକ୍ଷାତ କରିବାର କାର୍ଯ୍ୟକ୍ରମ ଅଛି ।"

ସେଦିନ ହୋଇଥାଏ ଏପ୍ରିଲ ମାସ ସାତ ତାରିଖ ।

ମୁଁ ସକାଳୁ ସକାଳୁ ଉଠି ପଡିଲି । ନିତ୍ୟକର୍ମ ସାରି ନିଜର ପୋଷାକପତ୍ର ପିନ୍ଧିଲି ।

ମୋର ଜଣେ ବନ୍ଧୁ ଆସି କହିଲେ, "ଟାଏ ବାନ୍ଧିନାହଁ କାହିଁକି ?"

ମୁଁ କହିଲି, "ମୋତେ ଟାଏ ବାନ୍ଧିବାକୁ ଭଲ ଲାଗେ ନାହିଁ ।"

ସେ ମୋତେ କହିଲେ, ଏଠି ପସନ୍ଦର କଥା ଉଠୁଚି କୁଆଡୁ ? ଆଜିପରା ମେୟରଙ୍କୁ ସାକ୍ଷାତ କରିବାକୁ ଅଛି । ତେଣୁ ଯଥାର୍ଥ ପୋଷାକ (Proper dress) ପତ୍ର ପିନ୍ଧି ଯିବାକୁ ପଡିବ ।"

ମୁଁ ବାଧ୍ୟ ହୋଇ ଟାଏ ପିନ୍ଧିଲି ।

ସେ ଦିନ ଆମେ ଆମ ଡାଇରେକ୍ଟର ରାୟ ଥମ୍ପସନ, ଶିକ୍ଷାଦାତା ଗାୟ ଫିଦରସନ, ରବର୍ଟ, ଆଣ୍ଡି ଓ ଟୋନି ପ୍ରଭୃତିଙ୍କ ସହିତ ମେୟରଙ୍କୁ ଦେଖା କରିବାକୁ ଗଲୁ ।

ଠିକ୍ ଦିନ ବାରଟା ବେଳେ ମେୟରଙ୍କ ସହିତ ଆମର ସାକ୍ଷାତ ହେଲା ।

ମେୟର ହସି ହସି ଆମ ସହିତ କରମର୍ଦ୍ଦନ (Handshake) କଲେ ।

ଆମକୁ ବସିବାକୁ କହି ନିଜେ ତାଙ୍କ ଟେବୁଲ ଉପରେ ବସି ପଡିଲେ ।

ପୁଣି ଆରମ୍ଭ କଲେ , "ଆପଣମାନେ ସଫଳତାର ସହିତ ଆପଣମାନଙ୍କ ଶିକ୍ଷା ଟେଲିଭିଜନ ପାଠ୍ୟକ୍ରମ ସାରିଛନ୍ତି ଓ କାର୍ଲଲାଇଲର ପରିବେଶକୁ ଉପଭୋଗ କରିଛନ୍ତି ଜାଣି ବିଶେଷ ଖୁସି ହେଲି । ଆପଣମାନେ ନିରାପଦର ସହିତ ଆପଣମାନଙ୍କ ଘରକୁ ଫେରନ୍ତୁ ଏହାହିଁ ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।"

ଏହାପରେ ସେ ଆମକୁ କୋକାକୋଲା, ଭାରତୀୟ ସୋଡା ଓ ଲେମ୍ବୁରସ ପିଇବାକୁ ଦେଲେ ।

ଆମକୁ ସ୍ମୃତି ସ୍ୱରୂପ କେତେକ ଉପହାର ମଧ୍ୟ ଦେଲେ ।

ସବୁଠାରୁ ମଜା କଥା ହେଲା ସେଦିନ ମେୟର ନିଜେ ଟାଏ ପିନ୍ଧି ନଥିଲେ । ସେ ଆମ ସହିତ କଥାବାର୍ତ୍ତା କରିବା ସମୟରେ କହି ପକାଇଲେ ଯେ ଟାଏ ପିନ୍ଧିବାକୁ ତାଙ୍କୁ ବିଶେଷ ଭଲ ଲାଗେ ନାହିଁ । ଏହା ତାଙ୍କ ତଣ୍ଟିକୁ ଚିପି ରଖିଲା ଭଳି ଲାଗେ ।

ମେୟରଙ୍କ କଥାଶୁଣି ମୁଁ ମନେ ମନେ ଭାବିଲି ମୁଁ କାହିଁକି ବନ୍ଧୁଙ୍କ କଥାରେ ଟାଏ ପିନ୍ଧିଲି । ପିନ୍ଧି ନଥିଲେ ହୁଏତ ମେୟର ଭାବିଥାନ୍ତେ ମୁଁ ତାଙ୍କ ଭଳି ଏକ ସମ ମନଭାବ ସଂପନ୍ନ ଲୋକ ବୋଲି ।

କିଛି ସମୟ ଆଳାପ ଆଲୋଚନା ପରେ ଆମେ ମେୟରଙ୍କଠାରୁ ବିଦାୟ ନେଲୁ ।

ଫେରିଲା ବେଳେ ସେ ପୁଣି କହିଲେ, ଆପଣମାନଙ୍କର ନିରାପଦ ଯାତ୍ରା ଆଶାକରେ ।"

ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଜଣାଇ ସେଠାରୁ ଫେରିଲୁ ।



# କାର୍ଲାଇଲରୁ ପ୍ରତ୍ୟାବର୍ତ୍ତନ

ଏପ୍ରିଲ୍ ମାସ ଆଠ ତାରିଖ । ସକାଳୁ ସକାଳୁ ମନଟା କାହିଁକି କେଜାଣି ଉଦାସ ଲାଗୁଥିଲା ।

ଆଉ କେତେ ଘଣ୍ଟା ପରେ ଆମକୁ ଆମର ପ୍ରିୟ ୟୁକାରିୟାନ କ୍ଲବ ଓ କାର୍ଲାଇଲ ସହର ଛାଡିବାକୁ ପଡିବ । ସକାଳ ଆଠଟାରେ କାର୍ଲାଇଲ ଷ୍ଟେସନରୁ ଲଣ୍ଡନ ଅଭିମୁଖେ ଯିବା ନିମନ୍ତେ ଆଗରୁ ଆମର ଟିକେଟ୍ ହୋଇ ଯାଇଥାଏ ।

ନିର୍ଦ୍ଦିଷ୍ଟ ସମୟରେ ଆମକୁ ଷ୍ଟେସନ ନେବାପାଇଁ ଟ୍ୟାକ୍‌ସିଟିଏ ଆସି ପହଞ୍ଚିଲା । ଟ୍ୟାକ୍‌ସିଟିରେ ଜିନିଷପତ୍ର ରଖିଲୁ ।

ଏହି ସମୟରେ ସେଠାରେ ଆସି ୟୁକ୍ରେନିୟନ୍ କ୍ଲବର କେୟାର ଟେକର ଓ୍ୱାଲଟର ପହଞ୍ଚିଲେ ।

ସେ ଆମକୁ ହସିହସି ବିଦାୟ ସମ୍ଭାଷଣ ଜଣାଇଲେ ।

ଆମେ ଗାଡି ଛାଡିବାର ଅଧଘଣ୍ଟା ପୂର୍ବରୁ କାର୍ଲାଇଲ ଷ୍ଟେସନରେ ପହଞ୍ଚିଲୁ ।

ଷ୍ଟେସନରେ ଆମକୁ ବିଦାୟ ଜଣାଇବା ପାଇଁ ଗାୟ, ରବର୍ଟ ଓ ଆଣ୍ଡି ଆସି ପହଞ୍ଚିଥିଲେ ।

ସେମାନଙ୍କ ସହ ଆମେ ଷ୍ଟେସନରେ ଚା ପାନକଲୁ ।

ବିଦାୟ ସମୟ ଯେତେ ନିକଟତର ହେଉଥାଏ ଆମ ମନ ସେତେ ଭାରାକ୍ରାନ୍ତ ହୋଇ ଆସୁଥାଏ । ମାତ୍ର ଗାୟ, ରବର୍ଟ, ଗ୍ରେସ୍ ଆଦି ବିଶେଷ ଖୁସି ହେଉଥାନ୍ତି ।

କାରଣ ସେମାନେ ଚାହୁଁଥିଲେ ଆମେ ଅତି ଶୀଘ୍ର ବହୁ ପଥ ଅତିକ୍ରମ କରି ଆମ ପରିବାର ସହିତ ଭଲରେ ଭଲରେ ପହଞ୍ଚୁ ।

ଠିକ୍ ଆଠଟା ବେଳେ କାର୍ଲଲାଇଲ ଦେଇ ଲଣ୍ଡନ ଅଭିମୁଖେ ଯିବାକୁ ଥିବା ଟ୍ରେନ୍‌ଟି ଆସି ପହଞ୍ଚିଲା ।

ଆମେ ଗାଡ଼ିରେ ଚଢ଼ିଲୁ ।

ଗାଡ଼ି ଛାଡ଼ିବା ମାତ୍ରେ ଗାୟ, ରବର୍ଟ, ଆଣ୍ଡି, ଗ୍ରେସ୍ ପ୍ରଭୃତି ହାତଟେକି ବିଦାୟ ଜଣାଇଲେ ।

ଆମ ଯାତ୍ରା ନିରାପଦ ହେଉ- ଏହାହିଁ ସେମାନଙ୍କର ବିଦାୟକାଳୀନ ଶୁଭେଚ୍ଛା ଥିଲା ।



# ଲଣ୍ଡନ ସହରରେ ଶେଷ ତିନିଦିନ

ଆମେ କାର୍ଲଲାଇଲ ଛାଡି ଲଣ୍ଡନ୍ ସହରରେ ଏପ୍ରିଲ ୮ ତାରିଖ ଦିନ ସନ୍ଧ୍ୟାବେଳେ ପହଞ୍ଚିଲୁ । ସେଠି ରହିବା ପାଇଁ ଆମେ ପୂର୍ବରୁ YMCA (Young Men's Christian Association) ହଷ୍ଟେଲର କର୍ତ୍ତୃପକ୍ଷଙ୍କ ନିକଟକୁ ଲେଖିଥିଲୁ ।

ସେଠାରେ ପହଞ୍ଚି ଦେଖିଲୁ ଯେ ଏହି ହଷ୍ଟେଲଟି ଏକ ଦୁଇ ମହଲା ବିଶିଷ୍ଟ ବଡ କୋଠାଘର । ଏହାର ପରିଚାଳନା ଦାୟିତ୍ୱରେ କଟକର ଜଣେ ଭଦ୍ର ବ୍ୟକ୍ତି ଥାଆନ୍ତି । ସେ ସେଠାରେ ନାୟକବାବୁ ନାମରେ ସୁପରିଚିତ ।

ଆମେ ସେଠାରେ ଜଣେ ଓଡ଼ିଆ ଭଦ୍ରବ୍ୟକ୍ତିଙ୍କୁ ଦେଖି ବିଶେଷ ଖୁସି ହୋଇଗଲୁ । ସେ ସଙ୍ଗେ ସଙ୍ଗେ ଆମକୁ ହଷ୍ଟେଲରେ ରହିବାର ବନ୍ଦୋବସ୍ତ କରି ଦେଲେ । ସେହି ହଷ୍ଟେଲରେ ରହିବାକୁ ହେଲେ ଜଣକୁ ଆବଶ୍ୟକ ଫିସ ଦେବା ସହିତ ଖ୍ରୀଷ୍ଟିୟାନ ସଂସ୍ଥାର ସଭ୍ୟ ହୋଇ ନଥିଲେ ସଭ୍ୟ ହେବାକୁ ପଡେ । ଆମେ ସଙ୍ଗେ ସଙ୍ଗେ ଖ୍ରୀଷ୍ଟିୟାନ ସଂସ୍ଥାର ସଭ୍ୟ ହୋଇଗଲୁ ।

ନାୟକବାବୁ ତାଙ୍କ ତରଫରୁ ଆମକୁ ଆମ ରହଣି ବିଷୟରେ ପଚାରିଥିଲେ । ସେ ଯେତେବେଳେ ଜାଣିଲେ ଯେ ଆମ ବିମାନ ଏପ୍ରିଲ ୧୨ ତାରିଖରେ ଲଣ୍ଡନ ଛାଡିବ ସଙ୍ଗେ ସଙ୍ଗେ କହିଲେ, " ଲଣ୍ଡନ ସହର ବୁଲିବା ପାଇଁ ଆପଣମାନେ ତିନି ଦିନ ସମୟ ପାଉଛନ୍ତି । ଏହି ସମୟ ଆପଣମାନଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ । ତେଣୁ ସେ ଆମକୁ ମାଡ୍‌ମ୍ ଟୁସଡ୍‌ସ୍, ବ୍ରିଟିଶ ମିଉଜିୟମ, ହାଇଡ ପାର୍କ ଆଦି ବୁଲି ଦେଖିବାକୁ ପରାମର୍ଶ ଦେଲେ ।

ସେହିସବୁ ସ୍ଥାନମାନ ବୁଲିଯିବା ପାଇଁ ଆମକୁ ସେ ଭୂଇଁତଳ ରେଳଗାଡିରେ ଯିବା ପାଇଁ ପରାମର୍ଶ ଦେଲେ । ଭୂଇଁତଳ ରେଳଗାଡିରେ ଗଲେ ଅଳ୍ପ ସମୟ ମଧ୍ୟରେ ଲଣ୍ଡନର ବିଭିନ୍ନ ସ୍ଥାନରେ ପହଞ୍ଚି ହେବ ଓ ବିଭିନ୍ନ ସ୍ଥାନ ଦେଖିବା ପାଇଁ ଅଧିକ ସମୟ ମିଳିବ ।



# ଲଣ୍ଡନର ଭୂଇଁତଳ ରେଳସେବା

ଲଣ୍ଡନ ସହର ଖୁବ୍ ବିରାଟ ହେଲେ ମଧ୍ୟ ଏହା ଭୂଇଁତଳ ରେଲ୍‌ପଥ ସେବା ଦ୍ୱାରା ସଂଯୁକ୍ତ । ଏହି ଭୂଇଁତଳ ରେଳସେବା ପ୍ରାୟ ଲଣ୍ଡନ ସହରର ପ୍ରଧାନ ପ୍ରଧାନ ଅଞ୍ଚଳ ଦେଇ ଉପଲବ୍ଧ ।

ଭୂଇଁତଳ ଟ୍ରେନ୍ ଗୁଡିକ ଘଣ୍ଟାକୁ ପ୍ରାୟ ୯୦ ମାଇଲ ବେଗରେ ଯା' ଆସ କରନ୍ତି । ତେଣୁ ଖୁବ୍ ଅଳ୍ପ ସମୟ ମଧ୍ୟରେ ଗୋଟିଏ ଷ୍ଟେସନ ଅତିକ୍ରମ କରି ଅନ୍ୟ ଷ୍ଟେସନରେ ପହଞ୍ଚି ହୁଏ । ପ୍ରତି ଦିନ ପ୍ରାୟ ତିନି ଲକ୍ଷଲୋକ ଏହି ଭୂଇଁତଳ ଟ୍ରେନ୍‌ରେ ଯିବା ଆସିବା କରିଥାନ୍ତି ।

ଭୂଇଁତଳେ ଥିବା ରେଳ ଷ୍ଟେସନ୍‌ରେ ବିଭିନ୍ନ ସ୍ଥାନକୁ ଯିବାପାଇଁ ମାନଚିତ୍ରମାନ ଥାଏ । ଏହି ମାନଚିତ୍ର ଗୁଡିକ ଖୁବ୍ ସରଳ ଓ ପ୍ରାଞ୍ଜଳ ଭାବେ ବର୍ଣ୍ଣିତ । ଲଣ୍ଡନର ଯେ କୌଣସି ସ୍ଥାନକୁ ସେହିଷ୍ଟେସନରୁ ଗଲାବେଳେ କେଉଁଠି ଟ୍ରେନ୍ ବଦଳେଇବାକୁ ପଡିବ ତାହା ମଧ୍ୟ ମାନଚିତ୍ରରୁ ସ୍ପଷ୍ଟଭାବେ ଜଣାଯାଇଥାଏ ।

ଷ୍ଟେସନର କାଉଣ୍ଟରରୁ ମଧ୍ୟ ଟିକେଟ କିଣିବାର ବ୍ୟବସ୍ଥାଥାଏ । ବସଭଡା ଠାରୁ ଟ୍ରେନ୍ ଭଡା କମ ହୋଇଥିବା ହେତୁ ଅଧିକାଂଶ ଲୋକ ଟ୍ରେନ୍‌ରେ ଯିବାକୁ ପସନ୍ଦ କରିଥାନ୍ତି ।

ସାଧାରଣତଃ ନୂଆକରି ଭୂଇଁତଳ ଟ୍ରେନ୍‌ରେ ଯାତ୍ରା କରୁଥିବା ଲୋକଙ୍କ ପ୍ରତି ଯାତ୍ରାର ଅନୁଭୂତି ରୋମାଞ୍ଚକର ହୋଇଥାଏ । ପୃଥିବୀ ପୃଷ୍ଠରୁ ଭୂଇଁ ତଳକୁ ଯିବା ଓ ତଳୁ ପୃଥିବୀ ପୃଷ୍ଠକୁ ଉଠିବାର ଅନୁଭୂତି ଖୁବ୍ ମଜାଦାୟକ ହୋଇଥାଏ । ଏପରି ଯିବା ଆସିବା ପାଇଁ ଖାଲି ବିଦ୍ୟୁତ୍‌ଚାଳିତ ପାହାଚ ଉପରେ ଗୋଡ ରଖିଲେ ହେଲା । ପାହଚ ଆପେ ଆପେ ଭୂଇଁତଳକୁ ନେଇ ଛାଡିଦେବ । ସେହିପରି ତଳେ ପହଞ୍ଚି ଉପରକୁ ଉଠୁଥିବା ପାହାଚ ଉପରେ ଗୋଡ ରଖିଲେ ଆପେ ଆପେ ଆସି ଉପରେ ପହଞ୍ଚିହେବ ।

ଏହି ପାହଚଧାଡିମାନ ସବୁ ସମୟରେ ଗତି କରୁଥାଏ । ତେଣୁ ଜଣକୁ ପାହାଚରେ ଯିବା ଆସିବା ନିମନ୍ତେ ପାହାଚଧାଡି ବାହାରୁ ଥିବା ସ୍ଥାନରେ ସତର୍କତାର ସହିତ ଠିଆହୋଇ ପାହାଚ ବାହାରୁ ଥିବା ସ୍ଥାନରେ ଗୋଡ ରଖିବାକୁ ପଡିଥାଏ ।

ଷ୍ଟେସନରେ ଠିଆ ହୋଇଥିଲା ବେଳେ ଯେତେବେଳେ ଗାଡିଟି ସୁଡଙ୍ଗ ଭେଦୀ ଆସେ ସେତେବେଳେ ଭୟଙ୍କର ଶବ୍ଦହୁଏ । ଜଣାପଡେ ସତେ ଯେମିତି ଏକ ଲୌହ ଦାନବ ଏକ ଦୁର୍ଗମ ପଥ ଭେଦ କରି ଆସୁଅଛି ।

ଗାଡିଟି ଷ୍ଟେସନରେ ପହଞ୍ଚିଗଲେ ଆପେଆପେ ତା'ର କବାଟ ଗୁଡିକ ଖୋଲିଯାଏ । ସେହିପରି ଟ୍ରେନ୍‌ଟି ଷ୍ଟେସନ ଛାଡିଲା ପୂର୍ବରୁ ପ୍ରତ୍ୟେକ ଡବାର କବାଟ ଗୁଡିକ ଆପେ ଆପେ ବନ୍ଦ ହୋଇଥାଏ ।

ଭୂଇଁତଳ ଟ୍ରେନ୍ ଯାତ୍ରାର ଅନୁଭୂତି ନୂତନ ହୋଇଥିବା ହେତୁ ଆମକୁ ଖୁବ୍ ଆନନ୍ଦ ଲାଗୁଥିଲା । ଏହାଛଡା ଭୂଇଁତଳ ଯାତ୍ରା ଉଷୁମଥିଲା । ବାହାରେ ଥଣ୍ଡା, ବର୍ଷା ଓ ପବନ ଥିବାରୁ ଯାତ୍ରୀମାନେ ଭୂଇଁତଳ ଯାତ୍ରା କରିବାକୁ ପସନ୍ଦ କରୁଥିଲେ ।

ଏବେ ଆମ ଦେଶର କୋଲକାତା ଓ ଦିଲ୍ଲୀରେ ଭୂଇଁତଳ ଟ୍ରେନ୍‌ରେ ଯାତ୍ରା କରିବାର ସୁବିଧା ଅଛି । ମାତ୍ର ଏହି ଯାତ୍ରା ନିମନ୍ତେ ସହରର ସବୁ ସ୍ଥାନକୁ ଭୂଇଁତଳ ରେଳ ସେବା (Metro service) ଯୋଗାଇଦେବା ସମ୍ଭବ ହୋଇନାହିଁ ।



# ବିଲାତର ରାଜଧାନୀ ଲଣ୍ଡନ ସହର

ଲଣ୍ଡନ ସହର ହେଉଛି ଯୁକ୍ତ ରାଜ୍ୟର ରାଜଧାନୀ । ଏହା ଥେମସ ନଦୀ କୂଳରେ ଦକ୍ଷିଣପୂର୍ବ ଇଂଲଣ୍ଡରେ ଅବସ୍ଥିତ । ମଧ୍ୟଯୁଗରୁ ଏହି ସହରଟି ବାଣିଜ୍ୟ କାରବାର ନିମନ୍ତେ ବିଲାତର ସାଂସ୍କୃତିକ କେନ୍ଦ୍ରରୂପେ ସୁପରିଚିତ । ପୃଥିବୀ ମାନଚିତ୍ରରେ ଲଣ୍ଡନ ସହରର ସ୍ୱତନ୍ତ୍ର ସ୍ଥାନ ଅଛି ।




ଲଣ୍ଡନ ସହର ବହୁ ଦର୍ଶନୀୟ ସ୍ଥାନରେ ଭରପୂର । ସେଥିପାଇଁ ଏହି ସହରକୁ ପ୍ରତିବର୍ଷ ବହୁ ଦର୍ଶକ ବୁଲି ଆସିଥାନ୍ତି । ଆମର ସ୍ୱଳ୍ପ ରହଣି ମଧ୍ୟରେ ଆମେ ବ୍ରିଟିଶ ମ୍ୟୁଜିୟମ୍ (British Musium), ଜାତୀୟ ପାଠାଗାର (National Library)ହାଇଡ ପାର୍କ, ମାଡାମ୍ ଟୁସେଡ୍ସ, ଚ୍ୟମ୍ବର ଅଫ ହରର୍ସ (Chamber of Horrors) ଆଦି ବୁଲି ଦେଖିବାର ସୁଯୋଗ ପାଇଥିଲୁ ।



# ବ୍ରିଟିଶ୍ ସଂଗ୍ରହାଳୟରେ ଆମେ

ବ୍ରିଟିଶ୍ ସଂଗ୍ରାହଳୟ ପ୍ରାଚୀନ ଜିନିଷ ପତ୍ରର ଏକ ଜାତୀୟ ସଂଗ୍ରାହଳୟ ରୂପେ ପୃଥିବୀରେ ପରିଚିତ । ଏହା ଲଣ୍ଡନର ବ୍ଲୁମ୍‌ସବରି (B!oomsbury) ଠାରେ ଅବସ୍ଥିତ । ଏହି ସଂଗ୍ରାହଳଟି ୧୭୫୩ ମସିହାରେ ଜନସାଧାରଣଙ୍କ ପାଣ୍ଠିରେ ପ୍ରତିଷ୍ଠା କରାଯାଇଥିଲା । ଏହି ସଂଗ୍ରାହଳୟର ଇଜିପ୍ଟ, ଆସରୀୟ, ଗ୍ରୀକ୍, ରୋମାନ ଓ ପୃଥିବୀର ବିଭିନ୍ନ ଦେଶର ବହୁ ମହାର୍ଘ ଭଗ୍ନାବଶେଷ, ଜୀବାଶ୍ମ ଓ ପ୍ରାଚୀନ କାଳର ପାତ୍ର ରଖାଯାଇଅଛି ।



ଏହି ସଂଗ୍ରହଳୟରେ ଆମେ ପୃଥିବୀର ସବୁଠାରୁ ବିରାଟ ପ୍ରାଣୀ ଡାଇନୋସର (dinosaur) କଙ୍କାଳ ଦେଖିବାର ସୁଯୋଗ ପାଇଥିଲୁ । ଏହି କଙ୍କାଳଟିକୁ ଏକ ବିରାଟ କୋଠରୀରେ ଝୁଲାଇ ରଖାଯାଇଥିଲା । ଏପରି ଏକ ବିରାଟ ପ୍ରାଣୀର କଙ୍କାଳ ଆମେ ପୂର୍ବରୁ କେବେ ଦେଖି ନଥିଲୁ । ଏହାର ଦୈର୍ଘ୍ୟ ପ୍ରାୟ ଶହେ



ପାଞ୍ଚ ଫୁଟ ଥିଲା । ଏହି ଦୀର୍ଘକାୟ କଙ୍କାଳକୁ ଦେଖିଲାପରେ ଏହି ପ୍ରାଣୀଟି ଯେ କେତେ ବିଶାଳ ହୋଇଥିବ ତାହା ସହଜରେ ହୃଦୟଙ୍ଗମ କରି ହେଉଥିଲା ।

ଏବେ ପୃଥିବୀରେ ଆଉ ଡାଇନୋସର ନାହାନ୍ତି । ପ୍ରକୃତି ସହିତ ଏହାର ଠିକ୍ ଭାବେ ଉପଯୋଜନ (adaptation) ହୋଇପାରିଲା ନାହିଁ । ତେଣୁ ଏହି ପ୍ରାଣୀଟି ସବୁ ଦିନ ପାଇଁ ପୃଥିବୀରୁ ଲୋପ ପାଇ ଯାଇଅଛି ବୋଲି ପ୍ରାଣୀବିତ୍‌ମାନେ ମତ ପୋଷଣ କରନ୍ତି ।



# କଙ୍ଗାରୁ ପେଟତଳେ ଥିବା ଥଳୀରେ ପିଲାର ଦୃଶ୍ୟ



ବିଚିତ୍ରଜୀବ କଙ୍ଗାରୁକୁ ଦେଖିଲେ କାହାକୁ ଖୁସି ନ ଲାଗେ ସତେ ! କଙ୍ଗାରୁ ତା'ର ପିଲାକୁ ପେଟତଳେ ଥିବା ଏକ ଥଳୀରେ ସୁରକ୍ଷିତ କରି ରଖିଥାଏ । ପେଟତଳେ ଥିବା ଥଳୀରେ ଛୁଆ ସହ ଏକ କଙ୍ଗାରୁର ମୃତ ଦେହକୁ ଏହି ସଂଗ୍ରାହଳୟରେ ସାଇତି ରଖାଯାଇଅଛି ।

ଏହାଛଡା ଅନେକ ପ୍ରକାର ଜୀବଜନ୍ତୁ ମୂର୍ତ୍ତି, ମାଟିପାତ୍ର ଆଦି ବ୍ରିଟିଶ ସଂଗ୍ରହାଳୟର ସୌନ୍ଦର୍ଯ୍ୟ ବୃଦ୍ଧି କରୁଛନ୍ତି । ସେହିସବୁ ମଧ୍ୟରେ ଚୀନ ଦେଶର ବିଭିନ୍ନ ମାଟିପାତ୍ର ବିଶେଷ ପ୍ରଣିଧାନ ଯୋଗ୍ୟ ଥିଲା । ସେହିସବୁ ପାତ୍ରରେ ପ୍ରାଚୀନକଳା ଓ ସଂସ୍କୃତିର ଝଲକ ଥିଲା । ଏହାଛଡା ଭାରତ ଓ ବ୍ରହ୍ମଦେଶର ମୂର୍ତ୍ତିଗୁଡିକ ମଧ୍ୟ ସଂଗ୍ରାହଳୟର ଶୋଭାବର୍ଦ୍ଧନ କରୁଥିଲା । ଭାରତର ମୂର୍ତ୍ତିଗୁଡିକ ମଧ୍ୟରେ ଓଡ଼ିଶାର ମୂର୍ତ୍ତିଗୁଡିକ ବିଶେଷ ଆକର୍ଷଣୀୟ ଥିଲା । ଓଡ଼ିଆ ଶିଳ୍ପୀର ହାତତିଆରି ଗଣେଶ, ଶିବ, ପାର୍ବତୀ, ନବଗ୍ରହ ଓ ଦେବୀ ଦୁର୍ଗାଙ୍କର ମୂର୍ତ୍ତି ଦର୍ଶକମାନଙ୍କ ମନକୁ ଯଥେଷ୍ଟ ଆନନ୍ଦ ଦେଉଥିଲା ।



ପ୍ରଥମ ଥର ପାଇଁ ଆମେ ବ୍ରିଟିଶ୍ ମ୍ୟୁଜିୟମରେ ମମ୍ମି (Mummy) ଦେଖିବାର ସୌଭାଗ୍ୟ ପାଇଥିଲୁ । ଆମେ ପୂର୍ବରୁ ପାଠ ପଢ଼ିଲାବେଳେ ଜାଣିଥିଲୁ ଯେ ମଣିଷର ମୃତ ଦେହକୁ ଇଜିପ୍‌ଟର ଲୋକ ସାଇତି ରଖୁଥିଲେ । ଦୀର୍ଘଦିନ ପାଇଁ କିପରି ମୃତ ଦେହକୁ ସାଇତି ରଖାଯାଏ, ସେ କୌଶଳ ଇଜିପ୍‌ଟର ଲୋକମାନଙ୍କୁ ଜଣାଥିଲା । ସାଇତା ହୋଇ ରହିଥିବା ମୃତ ଦେହକୁ "ମମ୍ମି" କୁହାଯାଏ ।

ବ୍ରିଟିଶ୍ ସଂଗ୍ରାହଳୟରେ ଅନେକ ମମ୍ମି ସାଇତା ହୋଇ ରହିଅଛି । ସେହିସବୁ ମମ୍ମିଗୁଡିକୁ ଦେଖିଲାବେଳେ ହଜାର ହଜାର ବର୍ଷତଳର ମଣିଷର ରୂପ ଓ ଦେହର ଗଠନ କଥା ଜାଣିହୁଏ ।

ଆମେ ମମ୍ମି ଦେଖୁଥିଲାବେଳେ ଗୋଟିଏ ଛୋଟିଆ ପିଲା ତା'ର ମା'କୁ ପ୍ରଶ୍ନ କରିଥିଲା, "ମା, ଇଜିପ୍‌ଟିର ଲୋକେ ଏପରି ମମ୍ମିମାନ କାହିଁକି ପ୍ରସ୍ତୁତ କରୁଥିଲେ ?"

ପିଲାଟିର ପ୍ରଶ୍ନଶୁଣି ମା' ତାକୁ ବୁଝାଇ କହିଥିଲେ, "ଏପରି ମମ୍ମି ପ୍ରସ୍ତୁତ କରିବା ପାଇଁ ଇଜିପ୍‌ଟର ଲୋକମାନଙ୍କର ବିଶ୍ୱାସ ସେମାନଙ୍କୁ ପ୍ରେରଣା ଦେଉଥିଲା । ସେମାନଙ୍କର ଧାରଣା ଥିଲା ଯେ ଦେହଟି ସୁରକ୍ଷିତ ରହିଲେ ପୁଣି ଥରେ ଦେହର ଆତ୍ମା ଦେହ ମଧ୍ୟକୁ ଫେରି ଆସିବ । ଲୋକଟି ପୁନଃ ଜୀବନ ପାଇବ । ସେଥିପାଇଁ ସେମାନେ ନେଟ୍ରନ (Natron) ସାହଯ୍ୟରେ ଦେହରୁ ଜଳୀୟ ଅଂଶକୁ

ଶୁଖାଇ ଦେଉଥିଲେ । ରେଜିନ୍(Resin) ଓ ବ୍ୟାଣ୍ଡେଜ କପଡାରେ ଦେହକୁ ସୁରକ୍ଷିତ ରଖୁଥିଲେ । ଆବଶ୍ୟକ ସ୍ଥଳେ ବିଭିନ୍ନ ପୋଷାକ ପତ୍ରରେ ଦେହକୁ ସଜାଇ କଫିନ୍ (Coffin) ଭିତରେ ରଖୁଥିଲେ ।”

ମା'ଙ୍କର କଥାଶୁଣି ପିଲାଟି ହଁ ମାରୁଥିଲା ଓ ମମି ସଂପର୍କରେ ବୁଝିବାକୁ ଚେଷ୍ଟା କରୁଥିଲା ।

ସେତେବେଳକୁ ମଧ୍ୟାହ୍ନ ଭୋଜନ ସମୟ ହୋଇଥିଲା ।

ଆମେ ମଧ୍ୟାହ୍ନ ଭୋଜନ ନିମନ୍ତେ ବ୍ରିଟିଶ୍ ସଂଗ୍ରାହଳୟରୁ ବିଦାୟ ନେଇ ଆମ ରହଣି ସ୍ଥାନକୁ ଫେରି ଆସିଲୁ ।



# ଅନ୍ୟ ଏକ ସଂଗ୍ରହାଳୟ : ମାଡାମ୍ ଟୁସାଡ୍

ମାଡାମ୍ ଟୁସାଡ୍ (Madame Tussaud) ପ୍ରଦର୍ଶନୀ ଓ ସଂଗ୍ରହାଳୟ ହେଉଛି ବିଲାତର ଏକ ଦର୍ଶନୀୟ ସ୍ଥାନ । ଏହି ସଂଗ୍ରାହଳୟରେ ମହମ ତିଆରି କାରୁକାର୍ଯ୍ୟମାନ ଶୋଭା ପାଉଅଛି । ଏହି କାରୁକାର୍ଯ୍ୟ ଗୁଡିକରୁ ଅଧିକାଂଶ ବିଶିଷ୍ଟ ଫରାସୀ ମହିଳା ଟୁସାଡଙ୍କଦ୍ୱାରା ତିଆରି । ଏହା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ୧୮୩୫ ମସିହାରେ ସେ ଲଣ୍ଡନର୍ ବେକର ଷ୍ଟ୍ରିଟ୍ (Baker street)ରେ ଏହାକୁ ପ୍ରତିଷ୍ଠା କରିଥିଲେ । ଶିଳ୍ପୀ ଟୁସାଡ୍ ୧୭୬୧ ମସିହାରେ ଫ୍ରାନସରେ ଜନ୍ମ ଗ୍ରହଣ କରିଥିଲେ । ସେ ଛଅବର୍ଷ ବୟସରୁ ଶିଳ୍ପୀ ଫିଲିପ୍ସ କୁଟୁୟାସଙ୍କ ନିକଟରୁ ମୂର୍ତ୍ତି ଗଢିବାର କୌଶଳ ଶିକ୍ଷାଲାଭ କରିଥିଲେ । ମାତ୍ର ୧୭ ବର୍ଷ ବୟସରେ ଟୁସାଡଙ୍କ ହାତର ପରଶପାଇ ଫ୍ରାନସ୍‌ର ପ୍ରସିଦ୍ଧ ଦାର୍ଶନିକ ଭୋଲଟାୟର ଭାଲଟାୟରଙ୍କ ମୂର୍ତ୍ତି ଜୀବନ୍ତ ହୋଇ ଉଠିଥିଲା । ଏହି ମୂର୍ତ୍ତିକୁ ଦେଖିଲେ ଅଳ୍ପ ବୟସରୁ ଶିଳ୍ପୀଙ୍କର କଳାନୈପୁଣ୍ୟ ସଂପର୍କରେ ପରିଚୟ ମିଳେ ।



ଫ୍ରାନସ୍‌ର ତତ୍‌କାଳୀନ ପରିସ୍ଥିତି ସ୍ୱାଧୀନ ଚେତା ଶିଳ୍ପୀଙ୍କ ପ୍ରତି ଅନୁକୂଳ ହେଲା ନାହିଁ । ତେଣୁ ସେ ୧୮୦୨ ମସିହାରେ ତାଙ୍କ ସ୍ୱାମୀଙ୍କ ସହ ବ୍ରିଟେନକୁ ପଳେଇ ଆସିଥିଲେ । ସେ ବ୍ରିଟେନର ବିଭିନ୍ନ ସ୍ଥାନରେ ତାଙ୍କର ହାତ ତିଆରି ମହମ କାର୍ଯ୍ୟ ଗୁଡିକୁ ପ୍ରଦର୍ଶିତ କଲେ । ସେଗୁଡିକୁ ଦେଖିବାକୁ ସେଠାକାର ଲୋକମାନଙ୍କ ମଧ୍ୟରେ ବିଶେଷ ଭିଡ ଜମିଲା । ସେ ମଧ ଇଂଲଣ୍ଡ ଓ ସ୍କଟଲାଣ୍ଡର ବିଭିନ୍ନ ସ୍ଥାନରେ ଛୋଟ ବଡ ପ୍ରଦର୍ଶନୀମାନ ଆୟୋଜନ କଲେ ।

୧୮୫୦ ମସିହାରେ ଏହି ମହିୟସୀ ମହିଳାଙ୍କ ମୃତ୍ୟୁ ହୋଇଥିଲା । ତାଙ୍କ ମୃତ୍ୟୁପରେ ତାଙ୍କର ପୁଅ ଓ ନାତିମାନେ ଲଣ୍ଡନର ମେରିଲିବୋନ ରୋଡ୍‌ରେ ଏକ ବଡଘର ନେଲେ । ସେହିଘରେ ସେହିସବୁ ମହମ ମୂର୍ତ୍ତି ଗୁଡିକ ସବୁଦିନ ପ୍ରଦର୍ଶିତ ହେବାର ବ୍ୟବସ୍ଥା ମଧ କରିଥିଲେ ।

ଆମେ ପ୍ରଦର୍ଶନୀ ଗୃହରେ ବିଭିନ୍ନ ଦୃଶ୍ୟ ସମ୍ବଳିତ କେତେକ ମହମ ମୂର୍ତ୍ତି ଶୋଭା ପାଉଥିବାର ଲକ୍ଷ୍ୟକଲୁ । ଏହାଛଡା ପୃଥିବୀର ବିଶିଷ୍ଟ ନେତା, କ୍ରିକେଟ୍ ଖେଳାଳି, ଚିତ୍ରକର ମାନଙ୍କର ମହମ ମୂର୍ତ୍ତି ମଧ ଦେଖିବାକୁ ପାଇଲୁ । ଏହି ମୂର୍ତ୍ତି ଗୁଡିକରେ ଆକାର ଓ ଗଠନ ଖୁବ୍ ନିଖୁଣ ଥିଲା । ସତେ ଯେମିତି ଜୀବନ୍ତ ମଣିଷମାନେ ଠିଆ ହୋଇଛନ୍ତି ! ତେଣୁ କେଉଁଠି ମହମ ମୂର୍ତ୍ତି ଓ କେଉଁଠି ପ୍ରକୃତ ମଣିଷ ଠିଆ ହୋଇଛନ୍ତି, ତାହା ଜାଣିବା କଷ୍ଟକର ଥିଲା ।

ସେହିପରି ଏକ ସନ୍ଦିଗ୍ଧ ସ୍ଥିତିରେ ମୁଁ ପଡିଥିଲି । ଗୋଟିଏ କୋଠରୀରେ ପଶିଲାପରେ ମୁଁ ଦେଖିଲି ମୂର୍ତ୍ତିଟିଏ । ସବୁ ମୂର୍ତ୍ତିର ଆଖି ନିଶ୍ଚଳ ଥିଲାପରି ଏହାର ଆଖି ମଧ ନିଶ୍ଚଳ ଥିଲା । ଏହି ମୂର୍ତ୍ତିର ପାଖରେ ଆଉ ଗୋଟିଏ ମୂର୍ତ୍ତି ଥିଲା ଓ ମଝିରେ ମଝିରେ ଆଖି ମିଟିମିଟି କରୁଥିଲା । ତାହା ଗୋଟିଏ ମହମ ତିଆରି ମୂର୍ତ୍ତି ନା ଜଣେ ସାହେବ ମୂର୍ତ୍ତିଭଳି ଠିଆ ହୋଇଛନ୍ତି; ତାହା ମୋତେ ସନ୍ଦେହରେ ପକାଇଥିଲା । କାରଣ ସେହି ମୂର୍ତ୍ତିଟିର ଆଖି ମଝିରେ ମଝିରେ ଦୀର୍ଘସମୟଧରି ସ୍ଥିର ରହୁଥିଲା । ପୁଣି କିଛି ସମୟପରେ ଆଖି ମିଟିମିଟି ହେଉଥିଲା । ତେଣୁ ମୋର ମନରେ ଧାରଣା ଜନ୍ମିଲା ଯେ ମହମ ମୂର୍ତ୍ତିଟିରେ ଆଖି ମିଟିମିଟି କରିବା ନିମନ୍ତେ କିଛି କୌଶଳ କରାଯାଇଅଛି । ଏପରି ଭାବୁଥିଲାବେଳେ ସେ ମୂର୍ତ୍ତିଟି ହଠାତ୍ ସଚଳ ହୋଇ କୋଠରୀର ବାହାରକୁ

ଚାଲି ଯାଇଥିଲା । ତେଣୁ ସେ ଯେ ମୂର୍ତ୍ତି ନୁହଁନ୍ତି, ଜଣେ ଭଦ୍ରଲୋକ, ତାହା ଜାଣିବାରେ ମୋ ମନରେ ଦ୍ୱିଧା ରହିଲା ନାହିଁ ।

ଏହାହିଁ ଥିଲା ମାଡାମ୍ ଟୁସାଡ୍‌ଙ୍କ ମହମ ମୂର୍ତ୍ତିର ବୈଶିଷ୍ଟ୍ୟ । ଏହି ମୂର୍ତ୍ତି ଗୁଡିକରେ ମଣିଷର ପ୍ରତିଛବି ଅତି ନିଖୁଣଭାବେ ପ୍ରତିଫଳିତ ହେଉଥିଲା । ତେଣୁ ତାହା ଜୀବନ୍ତ ମଣିଷ ନା ହାତ ତିଆରି ମହମମୂର୍ତ୍ତି ତାହା ଜାଣିବାକୁ ଦର୍ଶକଙ୍କ ପକ୍ଷେ କଷ୍ଟ ହେଉଥିଲା ।

ସେ କୋଠରୀ ଛାଡି ଆଉ ଗୋଟିଏ କୋଠରୀରେ ପ୍ରବେଶ କଲା ବେଳକୁ ସେ କୋଠରୀରେ ପୃଥିବୀର ବିଶିଷ୍ଟ ବ୍ୟକ୍ତିମାନଙ୍କର ମହମ ମୂର୍ତ୍ତି ଦେଖିବାକୁ ମିଳିଲା । ସେହି କୋଠରୀରେ ମହାତ୍ମାଗାନ୍ଧୀ ଓ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ମହମ ମୂର୍ତ୍ତି ଶୋଭା ପାଉଥିଲା ।



ସେଦିନ ବିଲାତର ଜଣେ ଭଦ୍ର ମହିଳା ତାଙ୍କର ଜଣେ କିଶୋରୀ ଝିଅଙ୍କ ସହିତ ମାଡାମ୍ ଟୁସାଡ୍ ଦେଖିବାକୁ ଆସିଥିଲେ । ସେହି ଝିଅଟି ଗାନ୍ଧୀଜୀଙ୍କ ମୂର୍ତ୍ତି ପାଖରେ ରହିଯାଇ ପଚାରିଲା, "ମା' ସେ କିଏ ?"

ଝିଅଟିର କଥାଶୁଣି ମାଆ ହସି ହସି କହିଲେ, " ତୁ କ'ଣ ତାଙ୍କୁ ଜାଣିନାହୁଁ ? ସେ ହେଉଛନ୍ତି ମହାତ୍ମା, ମହାତ୍ମାଗାନ୍ଧୀ । ମହାତ୍ମା ଜାତିର ପିତା ରୂପେ ଭାରତୀୟମାନଙ୍କ ଦ୍ୱାରା ପୂଜା ପାଉଛନ୍ତି ।"

ମହାତ୍ମାଗାନ୍ଧୀଙ୍କ ପ୍ରତି ବିଲାତର ଲୋକମାନଙ୍କ ମଧ୍ୟରେ ଅହେତୁକ ଭକ୍ତି ଓ ଶ୍ରଦ୍ଧା ରହିଛି ।

ଆମେ ବିଲାତରେ ଥିଲାବେଳେ ଲର୍ଡ ରିଚାର୍ଡ ଆଟନ୍‌ବରୋଙ୍କ ଦ୍ୱାରା ପ୍ରସ୍ତୁତ ଗାନ୍ଧୀ ଚଳଚିତ୍ର ମୁକ୍ତି ଲାଭ କରିଥିଲା । ବିଭିନ୍ନ ପ୍ରେକ୍ଷାଳୟରେ ଏହି ଚଳଚିତ୍ର ଚାଲୁଥିଲା ବେଳେ ବିଶେଷ ଭିଡ ହେଉଥିଲା ଓ ଏହା ଦୀର୍ଘଦିନ ପାଇଁ ପ୍ରେକ୍ଷାଳୟଗୁଡିକରେ ଚାଲିଥିଲା ।

ଆମ ଦେଶପରି ଗାନ୍ଧୀଜୀଙ୍କୁ 'ମହାତ୍ମା' କହି ବିଲାତର ଲୋକେ ଶ୍ରଦ୍ଧା ଓ ସମ୍ମାନ ଜଣାନ୍ତି । ଏହା ଲକ୍ଷ୍ୟ କରି ମୋତେ ବିଶେଷ ଖୁସି ଲାଗିଥିଲା । ସେମାନେ ଗାନ୍ଧୀଙ୍କର ଅହିଂସା, ସତ୍ୟ ଓ ନ୍ୟାୟ ପୂର୍ଣ୍ଣ ବ୍ୟବହାରରେ ବିଶେଷ ଭାବେ ଉଦ୍‌ବୁଦ୍ଧ ହୋଇଥିଲେ ।

ଏତଦ୍‌ବ୍ୟତୀତ ଆମେ ମାଡାମ ଟୁସାଡ୍ ପ୍ରଦର୍ଶନୀ ଗୃହରେ ପୃଥିବୀର ନାମଜାଦା ଖେଳାଳିମାନଙ୍କର ମହମ ମୂର୍ତ୍ତି ଦେଖିବାକୁ ପାଇଥିଲୁ । ବିଶ୍ୱ ବିଖ୍ୟାତ ଐତିହାସିକ ଦାର୍ଶନିକ ଓ ବୈଜ୍ଞାନିକ ମାନଙ୍କର ମହମ ମୂର୍ତ୍ତି ପ୍ରଦର୍ଶନୀ ଗୃହର ଗାମ୍ଭୀର୍ଯ୍ୟକୁ ବିଶେଷଭାବେ ବୃଦ୍ଧି କରିଥିଲା ।

ସେହି ମୂର୍ତ୍ତିମାନଙ୍କ ମଧ୍ୟରେ ବିଲାତର ରାଜ ପରିବାରର ମୂର୍ତ୍ତି ମଧ୍ୟ ଶୋଭା ପାଉଥିଲା । ଯୁବରାଜ ଚାର୍ଲସଙ୍କ ସହିତ ଲେଡି ଡାୟନାଙ୍କର ବିବାହ ଉତ୍ସବର ଦୃଶ୍ୟ ଜୀବନ୍ତ ଥିଲା ।



# ଭୟାନକ ଦୃଶ୍ୟର ପ୍ରକୋଷ୍ଠ (Chamber of Horrors)

ମ୍ୟାଡମ୍ ଟୁସାଡ୍‌ରେ ଥିବା ଭୟାନକ ଦୃଶ୍ୟର ପ୍ରକୋଷ୍ଠଟି ବାସ୍ତବରେ ଅତ୍ୟଧିକ ଭୟାନକ ଥିଲା । ଏଥିରେ ଅପରାଧୀମାନଙ୍କଦ୍ୱାରା ସଂଗଠିତ ହେଉଥିବା ବିଭିନ୍ନ କାର୍ଯ୍ୟର ଦୃଶ୍ୟ ମନ ମଧ୍ୟରେ ଯେତିକି ଭୟ ସୃଷ୍ଟି ଆଣୁଥିଲା, ସେତିକି ରୋମାଞ୍ଚ ମଧ୍ୟ ସୃଷ୍ଟି କରିବାକୁ ଉପାଦାନ ଯୋଗାଉଥିଲା । ଏହି ପ୍ରକୋଷ୍ଠଟିରେ କେଉଁଠି ମୃତ୍ୟୁ ଦଣ୍ଡର ଦୃଶ୍ୟ ତ କେଉଁଠି ଜଘନ୍ୟ ଅପରାଧ ଘଟାଉଥିବା ଲୋକମାନଙ୍କର ଲୋମହର୍ଷଣକାରୀ କାର୍ଯ୍ୟର ଦୃଶ୍ୟ ସ୍ଥାନ ପାଇଥିଲା ।

ପ୍ରକୋଷ୍ଠଟିର ପ୍ରାରମ୍ଭରେ ଗିଲୋଟିନ୍ ଯନ୍ତ୍ର ସାହାଯ୍ୟରେ ହତ୍ୟା କରିବାର ପଦ୍ଧତି ପ୍ରଦର୍ଶିତ ହେଉଥିଲା । ସେଦିନ ଆମେ ଦେଖିଥିବା ଦୃଶ୍ୟଟି ହେଲା ଏହିପରି :



ଗୋଟିଏ ଗିଲୋଟିନ୍ ଯନ୍ତ୍ରର ତଳେ ଏକ ଲୋକକୁ ଶୁଆଇ ଦିଆଯାଇଥିଲା । ସେ ଯେପରି ତା'ର ମୁଣ୍ଡକୁ ହଲଚଲ କରି ନ ପାରିବ, ସେଥିପାଇଁ ତା'ର ମୁଣ୍ଡକୁ ଏକ ଫ୍ରେମ୍‌ରେ ଚପାଇ ରଖା ଯାଇଥିଲା । ଗିଲୋଟିନ୍ ଯନ୍ତ୍ରର ଧାରଣା ବ୍ଲେଡଟି ତା'ର ବେକ

ଉପରକୁ ଥିଲା । କିଛି ସମୟପରେ ଧାରୁଆ ବ୍ଲେଡଟି ଖସି ଆସିଲା । ଚାହୁଁ ଚାହୁଁ ଲୋକଟିର ମୁଣ୍ଡରୁ ଗଣ୍ଡିଟି ଅଲଗା ହୋଇଗଲା ।

ମୃତ୍ୟୁଦଣ୍ଡ ପ୍ରଦାନ ପାଇଁ ପ୍ରଥମେ ଫ୍ରାନସରେ ଏଇ ଗିଲୋଟିନ୍ ଯନ୍ତ୍ରର ବ୍ୟବହାର କରାଯାଇଥିଲା । ୧୭୯୨ ମସିହାରେ ଫ୍ରାନସ୍ ସରକାରଙ୍କ ନିର୍ଦ୍ଦେଶ କ୍ରମେ ଜୋସେଫ୍ ଇଗ୍ନେସ ଗିଲୋଟିନ୍ ନାମକ ଜଣେ ଡାକ୍ତର ଏହି ଯନ୍ତ୍ର ତିଆରି କରିଥିଲେ । ତାଙ୍କ ନାମ ଅନୁସାରେ ଏହି ଯନ୍ତ୍ର ଗିଲୋଟିନ୍ ନାମରେ ପରିଚିତ ।

ଗିଲୋଟିନ୍ ଯନ୍ତ୍ରଟିର ଗଠନ ପ୍ରଣାଳୀ ଏହିପରି :

ଦୁଇଟି ଖମ୍ୱ ଉପରେ ସେ ଦୁଇଟିକୁ ମୋଡିଲାଭଳି ଢାଞ୍ଚାରେ ଏକ ବିମ୍ ଲଗା ଯାଇଥାଏ । ସେହି ବିମର ତଳଦେଶରେ ଏକ ଓଜନ ଦ୍ୱାରା ଇସ୍ପାତ କାତି ଓହଳିବା ଅବସ୍ଥାରେ ଥାଏ । ଦୁଇଖମ୍ୱର ମଝି ଅଂଶର ତଳ ଭାଗରେ ଏକ ଫ୍ରେମ୍ ଥାଏ । ଏହି ଫ୍ରେମ୍ ଦ୍ୱାରା ମୃତ୍ୟୁ ଦଣ୍ଡାଦେଶ ପାଉଥିବା ବ୍ୟକ୍ତିର ମୁଣ୍ଡକୁ ଅଟକାଇ ରଖାଯାଏ । ଅପରାଧୀର ମୁଣ୍ଡକୁ ସେହି ଫ୍ରେମରେ ଚାପିରଖି ଦିଆ ଯିବାପରେ କାତିରେ ଲାଗିଥିବା ରଶି ବା ଲୁହା ତାରକୁ ଖସାଇ ଦିଆଯାଏ । କାତିଟି ଜୋରରେ ତଳକୁ ଖସି ଆସେ ଓ ଅପରାଧୀର ବେକ ଉପରେ ପଡେ । ଏହା ଫଳରେ ତା'ର ମୁଣ୍ଡଗଣ୍ଡି ଅଲଗା ହୋଇଯାଏ ।

ସାଧାରଣତଃ ଫ୍ରାନ୍ସ ରାଜ ପରିବାର ବିଶେଷ ଅତ୍ୟାଚାରୀ ଥିଲେ । ସେମାନେ ଏହି ଯନ୍ତ୍ର ସାହାଯ୍ୟରେ ନିରୀହ ଲୋକମାନଙ୍କୁ ଅତ୍ୟାଚାର କରୁଥିଲେ ।

ଏହାଛଡା ସେହି ପ୍ରକୋଷ୍ଠରେ ବିଭିନ୍ନ ସ୍ଥାନରେ ମୃତ୍ୟୁ ଦଣ୍ଡର ବିଭିନ୍ନ ପଦ୍ଧତି ବର୍ଣ୍ଣନା କରାଯାଇଥିଲା ।

ଜଣେ ଲୋକ ଧନଲୋଭରେ ବିଭିନ୍ନ ସମୟରେ ବିବାହ କରି ଯୌତୁକ ଲାଭ କରୁଥିଲା । ତା'ର ସେହି ସ୍ତ୍ରୀମାନଙ୍କୁ କିପରି ପାଣିରେ ବୁଡାଇ ମାରୁଥିଲା, ସେହି ଦୃଶ୍ୟ ପ୍ରଦର୍ଶିତ ହୋଇଥିଲା । ପ୍ରକୋଷ୍ଠଟିର ଏକ ଅନ୍ଧକାରଚ୍ଛନ ପରିବେଶ ମଧ୍ୟରେ ଟ୍ରାଫାଲଗାର ଯୁଦ୍ଧ (Battle of Trafalgar)ର ଦୃଶ୍ୟ ଅତୀବ ମର୍ମସ୍ପର୍ଶୀ ଓ ଭୟାନକ ଥିଲା । ଏହି ଯୁଦ୍ଧଟି ବ୍ରିଟିଶ୍ ନୌବହର ଏବଂ ଫ୍ରାନସ୍ ଓ ସ୍ପେନର

ମିଳିତ ନୌବହର ମଧ୍ୟରେ ସଂଘଟିତ ହୋଇଥିଲା । ଏହି ଯୁଦ୍ଧ ୨୧ ଅକ୍ଟୋବର ୧୮୦୫ ମସିହାରେ ସ୍ପେନର ଦକ୍ଷିଣ ଉପକୂଳରେ ଅବସ୍ଥିତ ଟ୍ରାଫାଲଗାର ଠାରେ ବ୍ରିଟିଶ୍ ନୌବାହିନୀ ଓ ନେପୋଲିୟନଙ୍କ ମଧ୍ୟରେ ଘଟିଥିଲା । ବ୍ରିଟିଶ୍ ନୌବାହିନୀ ନେପୋଲିୟନଙ୍କ ବ୍ରିଟେନ ଆକ୍ରମଣ କରିବାର ସ୍ୱପ୍ନକୁ ସବୁଦିନ ପାଇଁ ଧୂଳିସାତ କରିଦେଇଥିଲେ ।

ମାଡାମ ଟସାଡ୍‌ରେ ମହମ ମୂର୍ତ୍ତି ବର୍ଣ୍ଣିତ ବିଭିନ୍ନ ଅପରାଧ ଓ ମଣିଷର ମଣିଷ ପ୍ରତି ଅତ୍ୟାଚାରର ଦୃଶ୍ୟ ଦେଖିଲା ପରେ ଯେ କୌଣସି ଲୋକଙ୍କ ମନରେ ଭାବାନ୍ତର ସୃଷ୍ଟି ହେବ । ସେ ପୁଣିଥରେ ଇତିହାସ ସଜ୍ଞାକୁ ଟିକେ ପରଖି ଦେବ ।

ଇତିହାସର ଏକ ବାସ୍ତବ ସଜ୍ଞା ଦେବାକୁ ଯାଇ ପଣ୍ଡିତ ନେହରୁ ଯଥାର୍ଥରେ ଲେଖିଛନ୍ତି:

ଯୁଗ୍ ଯୁଗଧରି ମଣିଷ ପ୍ରକୃତି ଓ ବଣଜଙ୍ଗଲର ପ୍ରାଣୀମାନଙ୍କ ବିରୋଧରେ ଯେଉଁ ସଂଗ୍ରାମ ଚଳାଇ ଆସିଛି ତାହାହିଁ ହେଉଛି ଇତିହାସ । ଏପରିକି ତା' ନିଜ ଲୋକମାନଙ୍କ ମଧ୍ୟରୁ ଯେଉଁମାନେ ତାକୁ ଦାବିଦେଇ ଶୋଷଣ କରିବାକୁ ଚେଷ୍ଟାକରନ୍ତି, ସେମାନଙ୍କ ବିରୋଧରେ ତା'ର ସଂଗ୍ରାମ ହେଉଛି ଇତିହାସ ।



# ବିଲାତର ଜାତୀୟ ପାଠାଗାର
## (British National Library)

ବିଲାତର ଏହି ଜାତୀୟ ପାଠାଗାରଟି ବ୍ରିଟିଶ୍ ମ୍ୟୁଜିୟମର ପୂର୍ବ ପୁସ୍ତକାଗାରକୁ ନେଇ ସ୍ୱତନ୍ତ୍ର ଭାବେ ୧୯୭୨ ମସିହାରେ ପ୍ରତିଷ୍ଠିତ ହୋଇଅଛି । ପ୍ରତିଦିନ ବହୁ ଦର୍ଶକ, ପଣ୍ଡିତ ଓ ଗବେଷକ ଜ୍ଞାନ ଆହରଣ ନିମନ୍ତେ ଏହି ପୁସ୍ତକାଗାରକୁ ବୁଲି ଆସିଥାନ୍ତି ।

ଆମପାଇଁ ଏହି ପୁସ୍ତକାଗାର ବୁଲି ଦେଖିବା ଏକ ଲୋଭନୀୟ ଆକର୍ଷଣ ଥିଲା ।

ଏହି ପୁସ୍ତକାଗାରଟି ଏତେ ବଡଯେ ସେ ସବୁକୁ ସ୍ୱଳ୍ପ ସମୟ ମଧ୍ୟରେ ବୁଲି ଦେଖିବା ଆମ ପାଇଁ କଷ୍ଟକର ଥିଲା । ଯେ କୌଣସି ଲୋକକୁ ମାସ ମାସ, ବର୍ଷ ବର୍ଷ ଲାଗିଯିବ ଏହି ପୁସ୍ତକାଗାର ଓ ଏହାର ବହିଗୁଡିକ ସଂପର୍କରେ ସମ୍ୟକ୍ ଧାରଣା ଆଣିବା ପାଇଁ ।



ପୁସ୍ତକାଗାରରେ ସ୍ଥାନ ପାଉଥିବା ଗୋଟିଏ ଗୋଟିଏ ବହିର ଦୈର୍ଘ୍ୟ, ପ୍ରସ୍ଥ ଓ ଉଚ୍ଚତା ଦେଖିଲେ ଆଖି ଖୋସି ହୋଇଯିବ ।

ଗୋଟିଏ ହଲର ଏକ ସ୍ଥାନରେ ବଡ ପୁସ୍ତକଟିଏ ଥୁଆ ହେବାର ଦୃଶ୍ୟ ଆମକୁ ଦେଖିବାକୁ ମିଳିଥିଲା । ଏହି ବହିଟିର ପୃଷ୍ଠାଗୁଡିକ ଏତେ ଅଧିକ ଥିଲା ଯେ ଏହାର ଗୋଟିଏ ପାର୍ଶ୍ୱ ଭୂମିତଳେ ଓ ଅନ୍ୟପାର୍ଶ୍ୱଟି ଛାତ ଦେହରେ ଲାଗିଥିଲା । ଜଣେ ବ୍ୟକ୍ତିଙ୍କୁ ଏହି ବହିଟି ପଡିବାକୁ ହେଲେ ବଡ ଶିଢୀରେ ଚଢି ଛାତ ଉପର ପାର୍ଶ୍ୱରୁ ପଢିବାକୁ ହେବ ।

ବ୍ରିଟିଶ ପୁସ୍ତକାଳୟର ବହୁ ପାଣ୍ଡୁଲିପି ଓ ପ୍ରଥମ ସଂସ୍କରଣ ପୁସ୍ତକ ଦେଖିବାର ସୌଭାଗ୍ୟ ଆମକୁ ମିଳିଥିଲା । ସେଠାରେ ମୁଁ ରାଧାକୃଷ୍ଣଙ୍କ ଚରିତ ବିଷୟ ବସ୍ତୁ ବର୍ଣ୍ଣିତ ଏକ ଓଡ଼ିଆ ପୋଥି ଦେଖିବାର ସୁଯୋଗ ପାଇଥିଲି ।

ସେହିପରି ଅନେକ ଓଡ଼ିଆ ବହି ପାଠାଗାରରେ ଦେଖି ମନ ଆନନ୍ଦିତ ହୋଇଥିଲା ।



# ହାଇଡପାର୍କ: ବକ୍ତୃତାର କେନ୍ଦ୍ରସ୍ଥଳୀ

ବିଲାତର ପ୍ରସିଦ୍ଧ ପାର୍କମାନଙ୍କ ମଧ୍ୟରୁ ହାଇଡପାର୍କ (Hydepark) ଅନ୍ୟତମ । ଏହି ପାର୍କଟି ପଶ୍ଚିମ କେନ୍ଦ୍ରୀୟ (West Central) ଲଣ୍ଡନରେ ଅବସ୍ଥିତ । ଏହି ପାର୍କଟି ୩୬୧ ଏକର ଜମିକୁ ନେଇ ପରିବ୍ୟାପ୍ତ ।

ପାର୍କଟିରେ ବହୁ କୃତ୍ରିମ ହ୍ରଦ ରହିଅଛି । ସେଠାରେ ହଂସ ଓ ଅନ୍ୟାନ୍ୟ ପକ୍ଷୀମାନଙ୍କର ବିଚରଣ ଦର୍ଶକମାନଙ୍କୁ ବିଶେଷ ଆକୃଷ୍ଟ କରିଥାଏ । ପାର୍କ ମଧ୍ୟ ଦେଇ ଗଲାବେଳେ ଶହ ଶହ କ୍ଷୁଦ୍ର କ୍ଷୁଦ୍ର ପକ୍ଷୀମାନଙ୍କୁ ଆଡେଇ ଯିବାକୁ ହୋଇଥାଏ । ସେହି ପକ୍ଷୀମାନେ ମଧ୍ୟ ଦର୍ଶକ ମାନଙ୍କ ହାତରୁ ବିଭିନ୍ନ ଖାଦ୍ୟଦ୍ରବ୍ୟ ଆଣି ଖାଆନ୍ତି । ସତେ ଯେମିତି ସେମାନେ ସେମାନଙ୍କର କୁନି କୁନି ପୁଅଝିଅ !

ହାଇଡ ପାର୍କରେ ଭାଷଣ ଦେବା ନିମନ୍ତେ ଏକ ସ୍ଥାନ ଅଛି । ଏହିସ୍ଥାନଟି ସ୍ପିକର୍ସ କର୍ଣ୍ଣର (Speakers' Corner) ରୂପେ ପରିଚିତ । ଏଠାରେ ଯେ କୌଣସି ବ୍ୟକ୍ତି ଯେ କୌଣସି ବିଷୟରେ ଭାଷଣ ଦେଇପାରିବେ । ଭାଷଣର ବିଷୟବସ୍ତୁ ଓ ବକ୍ତା (Speaker)ଙ୍କ ଉପରେ କୌଣସି ବାହ୍ୟ ପ୍ରତିବନ୍ଧକ ନଥାଏ । ବିଲାତରେ ରାଣୀ କିମ୍ବା ବିଲାତର ପ୍ରଧାନମନ୍ତ୍ରୀଙ୍କୁ ଯଦି କେହି ସମାଲୋଚନା କରିବାକୁ ଚାହାନ୍ତି, ତେବେ ସେ ଏହି ପାର୍କରେ ନିରାପଦରେ କରିପାରିବେ ।



ସ୍ପିକରସ୍ କର୍ଣ୍ଣରରେ ଯେମିତି ବକ୍ତାଙ୍କର ନିର୍ଦ୍ଦିଷ୍ଟତା ନଥାଏ, ସେମିତି

ଶ୍ରୋତାଙ୍କର ମଧ୍ୟ ନିର୍ଦ୍ଦିଷ୍ଟତା ନଥାଏ । ଜଣେ ଇଚ୍ଛା କଲେ ଭାଷଣ ଦେଇ ପାରିବେ ଓ ଯିଏ ଯେତେବେଳେ ଚାହିଁବ ଶ୍ରୋତାଟିଏ ହୋଇପାରେ । ତେଣୁ ସ୍ପିକର୍ସ କର୍ଣ୍ଣରସ୍ ହେଉଛି ବ୍ୟକ୍ତି ସ୍ୱାତନ୍ତ୍ର ପ୍ରତିପାଦନ କରିବାର ଏକ ଉତ୍ତମ ସ୍ଥାନ ।

ଆମେ ସ୍ପିକର୍ସ କର୍ଣ୍ଣର ବୁଲିଲାବେଳେ ଜଣେ ଧାହେବ ଭାଷଣ ଦେଉଥିବାର ଦୃଶ୍ୟ ଦେଖିଲୁ । ତାଙ୍କର ଭାଷଣ ଶୁଣି ଜଣେ ଅଧେ ଲୋକ ମଝିରେ ମଝିରେ ଥଟ୍ଟା କରୁଥିଲେ । ସେ ବ୍ୟକ୍ତି ଜଣକ ମଧ୍ୟ ତାଙ୍କୁ କଟୁ ମନ୍ତବ୍ୟ ଦେବାକୁ ପଛାଉ ନଥିଲେ । ଆଉ ଦଳେ ଲୋକ ମଝିରେ ମଝିରେ ଉଚ୍ଚ ହାସ୍ୟରୋଳ କରୁଥିଲେ ।

ଭାଷଣ ଦେବା ଏକ ସହଜ କାର୍ଯ୍ୟ ନୁହେଁ । ପୁନଶ୍ଚ ଭାଷଣ ଶୁଣିବା ପାଇଁ ମଧ୍ୟ ଶ୍ରୋତାଙ୍କର ଆବଶ୍ୟକତା ଥାଏ । ମାତ୍ର ଉଭୟେ ବକ୍ତା ଓ ଶ୍ରୋତାଙ୍କ ନିମନ୍ତେ ସ୍ପିକର୍ସ କର୍ଣ୍ଣର ଏକ ମୁକ୍ତ ଓ ଅବାଧ ପରିବେଶ ଯୋଗାଇଥାଏ । ଏହାଫଳରେ ସ୍ୱାଧୀନ ମନରେ ସ୍ୱାଧୀନ ଚିନ୍ତାଧାରା ସହଜରେ ପ୍ରକାଶ କରିଥାଏ ।

ଏହି ଦୃଷ୍ଟି କୋଣରୁ ହାଇଡ ପାର୍କସ୍ଥିତ ସ୍ପିକର୍ସ କର୍ଣ୍ଣର ସ୍ଥାନ ସ୍ୱତନ୍ତ୍ର ।

ଏଠାରେ ବକ୍ତାଙ୍କ ଭାଷଣ ଉପରେ ଆଇନ ଅଦାଲତ ତରଫରୁ ମଧ୍ୟ କୌଣସି ପ୍ରତିବନ୍ଧକ ନାହିଁ ।



# ୱାଇ.ଏମ୍. ସି.ଏ. ହଷ୍ଟେଲର ଏକ ଅନୁଭୂତି

ଲଣ୍ଡନ ସହରର ୱାଇ.ଏମ୍. ସି.ଏ ହଷ୍ଟେଲରେ ଆମର ସ୍ୱଳ୍ପରହଣି ମଧ୍ୟରେ ଲଣ୍ଡନ ସହର ସଂପର୍କରେ ବ୍ୟାପକ ଅନୁଭୂତି ଆସିଥିଲା । କାର୍ଲାଇଲ ଗଲାବେଳେ ଆମକୁ ଲଣ୍ଡନ ସହରରେ ରହିବାର ସୁଯୋଗ ମିଳିନଥିଲା । ଆସିଲାବେଳେ ଆମର ଉଡାଣ (Flight) ତିନିଦିନ ଡେରି ଥିବାରୁ ଆମକୁ ଏହି ତିନିଦିନ ଲଣ୍ଡନ ଦେଖିବା ନିମନ୍ତେ ଅପୂର୍ବ ସୁଯୋଗ ଦେଇଥିଲା । ତାହା ଯଦି ହୋଇ ନଥାନ୍ତା, ତେବେ ଆମର ବିଲାତ ଯାତ୍ରା ଅସଫଳ ହୋଇଥାନ୍ତା । ଆମେ ଏହି ସୁଯୋଗ ୱାଇ.ଏମ୍.ସି.ଏ ହଷ୍ଟେଲ ମାଧ୍ୟମରେ ପାଇଥିବା ହେତୁ ନିଜକୁ ଭାଗ୍ୟବାନ ମନେ କରୁଥିଲୁ ।

ମୁଁ ୱାଇ.ଏମ୍.ସି.ଏ ହଷ୍ଟେଲର ଉପର ମହଲାର ଏକ ରୁମ୍‌ରେ ରହିଥିଲି ।

ଦିନେ ମୁଁ ଏହି ରୁମ୍‌ରେ ମୋର ଜିନିଷପତ୍ର ତଥା ନୂଆ କିଣିଥିବା ଟେପ୍‌ରେକର୍ଡର, କ୍ୟାମେରା ଆଦି ରଖି ବାହାରକୁ ବୁଲିଯାଇଥିଲି । ରୁମ୍‌ର ଚାବିଟି ମୋ ପାଖରେ ଥିଲା ।

ସନ୍ଧ୍ୟାବେଳକୁ ଫେରି ଦେଖେଯେ ମୋର ରୁମ୍‌ଟି ଖୋଲା ଅଛି ଓ ଜଣେ ଭଦ୍ରବ୍ୟକ୍ତି ପଶି ପାଣିଟ୍ୟାପ୍ ଓ ଓଦା କାରପେଟ୍ ସଜାଉଛନ୍ତି ।

ମୁଁ ଯିବା ସମୟରେ ମୋ ଜିନିଷପତ୍ର ବ୍ୟତୀତ ରୁମ୍‌ର ଟେବୁଲ ଉପରେ କିଛି ବିଲାତ ମୁଦ୍ରା ରଖି ଯାଇଥିଲି ।

ତେଣୁ ବାହାରର ଜଣେ ବ୍ୟକ୍ତିଙ୍କୁ ମୋ ରୁମ୍‌ରେ ଦେଖି ବିବ୍ରତ ହେଲି ।

ସେ ଭଦ୍ରବ୍ୟକ୍ତି ଜଣକ ରୁମ୍‌ଟିକୁ ମରାମତି କରି ଚାଲି ଗଲେ ।

ମୁଁ ଦେଖିଲି ମୋର ଜିନିଷ ପତ୍ର ଯେଉଁଠି ଯେପରି ସେପରି ଅଛି ।

ପରେ ମୁଁ ଓ୍ୱାଇ.ଏମ୍.ସି.ଏ. ହଷ୍ଟେଲର ପରିଚାଳକ ନାୟକବାବୁଙ୍କୁ ପଚାରିଲି, "ଆପଣ ତ ମୋର ଅନୁପସ୍ଥିତିରେ ମୋ ରୁମ୍‌ର ଦ୍ୱିତୀୟ (duplicate) ଚାବିଟି ଦେଇ ଦେଲେ । ଯଦି ସେ କିଛି ଜିନିଷ ପତ୍ର ନେଇ ଯାଇଥାନ୍ତେ.........."

ଏହି ପ୍ରଶ୍ନର ଉତ୍ତରରେ ନାୟକବାବୁ କହିଲେ, "ଦେଖନ୍ତୁ, ଲଣ୍ଡନ ସହରରେ ପ୍ରାୟ ଅଣକୁଶଳୀ ଶ୍ରମିକ (Unskilled labour) ପାଇବା କଷ୍ଟ କର ହୋଇଥାଏ । ତେଣୁ ସେମାନେ ଛୋଟ ମୋଟ କାମ ପାଇଁ ବେଶୀ ଅର୍ଥ ଦାବୀ କରିଥାନ୍ତି । ଯାହା ଫଳରେ ସେମାନଙ୍କର ଦୈନିକ ଉପାର୍ଜନ ମଧ୍ୟ ଯଥେଷ୍ଟ ହୋଇଥାଏ । ଏଣୁ ଏ ଶ୍ରେଣୀୟ ଲୋକେ ପର ଜିନିଷ ଉଠାଇବାତ ଦୂରର କଥା, ସେଥିପ୍ରତି ଟିକିଏ ହେଲେ ନଜର ଦିଅନ୍ତି ନାହିଁ ।"

ନାୟକ ବାବୁଙ୍କର ଏଇ କେଇ ପଦ କଥା ମୋ ପ୍ରତି ମୂଲ୍ୟବାନ ଥିଲା ।

ସେ ଦିନର ସେଇ ଅନୁଭୂତି ମୋତେ ପରବର୍ତ୍ତୀ ଜୀବନରେ ଜନ ଜୀବନରେ କାମ କରୁଥିବା ପ୍ରତ୍ୟେକ ମଣିଷର ଜୀବନ ଶୈଳୀ ଅନୁଧ୍ୟାନ କରିବାକୁ ପ୍ରେରଣା ଦେଇଥିଲା ।



# ଲଣ୍ଡନ ସହରରୁ ଭାରତ ଅଭିମୁଖେ

୧୯୮୩ ମସିହା ଏପ୍ରିଲ ମାସ ଏଗାର ତାରିଖ । ସେଦିନ ଆମର ଲଣ୍ଡନ ସହର ଛାଡି ଭାରତ ଅଭିମୁଖେ ଫେରିବାର ଥିଲା । ସକାଳୁ ସକାଳୁ ଆମକୁ YMCA ହଷ୍ଟେଲର ମ୍ୟାନେଜର ନାୟକବାବୁ ପଚାରିଲେ, "ଆପଣମାନଙ୍କର ଉଡାଣ (Flight) କେତେବେଳେ ଅଛି ?"

ଆମେ କହିଲୁ, "ରାତି ନଅଟା ଦଶମିନିଟ୍‌ରେ ।"

ନାୟକ ବାବୁ କହିଲେ, "ଏଠାରୁ ହିଥ୍ରୋ (Heathrow) ଆନ୍ତର୍ଜାତିକ ବିମାନ ଘାଟି ପ୍ରାୟ ପଚିଶ କିଲୋମିଟର ହେବ । ପୁଣି ସନ୍ଧ୍ୟା ସମୟରେ ରାସ୍ତା ଯାନବାହନ ଯୋଗୁଁ ଭିଡ ରହିବ । ତେଣୁ ଆପଣମାନେ ସନ୍ଧ୍ୟା ୭ଟା ମଧ୍ୟରେ ହିଥ୍ରୋ ଆନ୍ତର୍ଜାତିକ ବିମାନଘାଟି ଅଭିମୁଖେ ବାହାରି ଯିବେ ।"

ଆମେ ତାହାହିଁ କଲୁ ।

ସନ୍ଧ୍ୟା ସାତଟା ବେଳେ ଆମେ ଆମର ଶେଷ ତିନିଦିନର ରହଣି ସ୍ଥାନ ଓ୍ୱାଇ.ଏମ୍.ସି.ଏ. ହଷ୍ଟେଲକୁ ପଛରେ ପକାଇ ହିଥ୍ରୋ ଆନ୍ତର୍ଜାତିକ ବିମାନ ଘାଟୀ ଅଭିମୁଖେ ବାହାରିଲୁ ।

ଯଥା ସମୟରେ ମୁଁ ଉଦ୍ଦିଷ୍ଟ କାଉଣ୍ଟରରେ ମୋର ଜିନିଷପତ୍ର ଦାଖଲ କଲି ।

ସେତେବେଳେ ଜଣେ ବ୍ୟକ୍ତି ୨୦ କିଲୋଗ୍ରାମର ବ୍ୟାଗେଜ୍ (Baggage) ନେବାର ନିୟମ ଥିଲା ।

ମାତ୍ର ମୋର ବ୍ୟାଗେଜ୍‌ଟି ୨୦ କିଲୋଗ୍ରାମରୁ ଅଧିକ ହେଲା । ଅଧିକ ଓଜନ ନିମନ୍ତେ ଭଡାଦେବା ମଧ୍ୟ କଷ୍ଟକର ଥିଲା ।

ତେଣୁ ମୁଁ ଆଣିଥିବା ଅନେକ ପୋଷାକ ପତ୍ର, ଚକୋଲେଟ, କିଛି କାଗଜ ପ୍ରତ୍ର ହିଥ୍ରୋ ବିମାନ ଘାଟିରେ ଛାଡି ଆସିଲି ।

ଯେହିସବୁ ଜିନିଷ ପତ୍ର ପ୍ରତି ମନରେ ମାୟା ଥିଲେ ମଧ୍ୟ ପରିସ୍ଥିତିର ତାଡନାରେ ସେଗୁଡିକୁ ହାତ ଛଡା କରିବାକୁ ପଡିଲା ।

ତାହା ହିଁ ଅନେକ ସମୟରେ ବିଜ୍ଞଲୋକମାନେ କରିଥାନ୍ତି ।

ଠିକ୍ ରାତ୍ର ୯ଟା ୧୦ ମିନିଟରେ ବ୍ରିଟିଶ୍ ଏୟାରୱେଜର ବିମାନଟି ହିଥ୍ରୋ ଆନ୍ତର୍ଜାତିକ ବିମାନଘାଟି ଛାଡିଲା ।

ପରଦିନ ଅପରାହ୍ନ ଗୋଟାଏ ବେଳେ ଆମେ ଆସି କୋଲକାତା ଆନ୍ତର୍ଜାତିକ ବିମାନ ଘାଟିରେ ପହଞ୍ଚିଲୁ ।



# ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ

ବିମାନରୁ ଅବତରଣ କରି ନିଜର ଜନ୍ମମାଟିରେ ପାଦ ଦେଲାବେଳକୁ ମନରେ ଅଫୁରନ୍ତ ଆନନ୍ଦ ଦେଖାଦେଲା ।

ଜନନୀର କୋଳ ଓ ଜନ୍ମଭୂମିର ସ୍ପର୍ଶ ଯେ ସ୍ୱର୍ଗଠାରୁ କେତେ ବଡ ସେଦିନ ମୁଁ ମର୍ମେ ମର୍ମେ ଅନୁଭବ କରିଥିଲି ।

ଜନ୍ମଭୂମି ଭାରତକୁ ଛାଡି ଯାଇଥିଲେ ମଧ୍ୟ ବିଲାତରେ ପ୍ରତିଟି ମୁହୂର୍ତ୍ତରେ ମନେ ପଡୁଥିଲା ପ୍ରିୟ ଜନ୍ମଭୂମି ଭାରତବର୍ଷ ।

ସେଠାରେ ଆମର ସମସ୍ତ ପୂର୍ବ ପରିଚୟ ବିଲୀନ ହୋଇ ଯାଇଥିଲା ।

କେବଳ ଥିଲା ଗୋଟିଏ ପରିଚୟ ।

ତାହା ହେଲା 'ଭାରତୀୟ' ।

ବିଲାତରୁ ଫେରି ପୁଣି ଥରେ ଭାରତ ମାଟିରେ ପାଦ ଦେଇଥିବା ହେତୁ ମନରେ ଅହେତୁକ ଗର୍ବ ଓ ଗୌରବ ଆସୁଥିଲା ।

କାରଣ ଆମେ ଥିଲୁ ଭାରତୀୟ । ଏକ ସ୍ୱାଧୀନ ରାଷ୍ଟ୍ରର ସ୍ୱାଧୀନ ମଣିଷ ।

**ଆମ ପାଇଁ ଶ୍ରେଷ୍ଠ ଚିନ୍ତନ ଥିଲା :**

**"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।**





ଓଡ଼ିଶାର ଜଣେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ଓ ଶିକ୍ଷାବିତ୍ ରୂପେ ଡଃ ଦିଗରାଜ ବ୍ରହ୍ମା ସୁପରିଚିତ । ତାଙ୍କ ରଚିତ ପୁସ୍ତକଗୁଡିକ ଜୀବନଧର୍ମୀ ଓ ପ୍ରାଣସ୍ପର୍ଶୀ । ବିଶେଷତଃ ଶିଶୁ ସାହିତ୍ୟ ପ୍ରସ୍ତୁତି, ପାଠ୍ୟପୁସ୍ତକ ପ୍ରଣୟନ ଓ ଗବେଷଣା କ୍ଷେତ୍ରରେ ଡଃ ବ୍ରହ୍ମାଙ୍କ ସ୍ଥାନ ସ୍ୱତନ୍ତ୍ର ।

ଡଃ ବ୍ରହ୍ମା ଛାତ୍ରାବସ୍ଥାରୁ ରାଜ୍ୟର ଅଗ୍ରଣୀ ଅନୁଷ୍ଠାନ ରେଭେନ୍ସା ମହାବିଦ୍ୟାଳୟ ପୂର୍ବାଛାତ୍ରବାସର ମୁଖପତ୍ର 'ଜାଗରଣ'ର ସମ୍ପାଦନା ଦାୟିତ୍ୱ ନେଇଥିଲେ । ସେ ସମୟରେ ଡଃ ବ୍ରହ୍ମାଙ୍କ ରଚିତ ଉପନ୍ୟାସ 'ସେ ମନ ବିହଙ୍ଗୀ', ସମାଲୋଚନା ପୁସ୍ତକ 'ମହାପୁରୁଷ ହାଡିଦାସ' ଓ କବିତା ପୁସ୍ତକ 'ପ୍ରଭାତୀ ତାରା' ପ୍ରକାଶ ଲାଭ କରିଥିଲା । ପରବର୍ତ୍ତୀ ସମୟରେ ଡଃ ବ୍ରହ୍ମାଙ୍କ ରଚିତ ଶିଶୁ ସାହିତ୍ୟ ପୁସ୍ତକ 'ଆସ ସଙ୍ଗାତ ବଣକୁ ଯିବା', 'ଚକା ଚକା ଭଉଁରୀ', 'ମୁନା ଡାକ୍ତର', 'ଶିକ୍ଷା ଦୁନିଆର କଥା ରାଇଜ', 'ପଣ୍ଡିତ ନୀଳକଣ୍ଠ', 'ବିଜାରେ ବଜା ବାଜାବଲା' ଓ 'ସୂର୍ଯ୍ୟମୁଖୀ' ଆତ୍ମପ୍ରକାଶ ଲାଭ କରିଅଛି ।

ଡଃ ବ୍ରହ୍ମା ଇତିହାସରେ ଏମ୍.ଏ. ଶିକ୍ଷାରେ ଏମ୍.ଏଡ୍. ଓ ଶିଶୁ ସାହିତ୍ୟର ଶିକ୍ଷାଗତ ପ୍ରୟୋଗ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ଏତଦ୍‌ବ୍ୟତୀତ ଡଃ ବ୍ରହ୍ମା ଶିକ୍ଷା ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସ୍ତୁତି ସଂପର୍କରେ ବିଲାତର କାର୍ଲିଲାଇଲ୍ ଓ ଜନସଂଖ୍ୟା ପ୍ରକଳ୍ପ ପରିଚାଳନାରେ ବ୍ୟାଙ୍ଗକ୍‌ସ୍ଥିତ ଧୂରକଜୀ ପଣ୍ଡିତ ବିଶ୍ୱବିଦ୍ୟାଳୟରୁ ମଧ୍ୟ ସ୍ୱତନ୍ତ୍ର ଯୋଗ୍ୟତା ହାସଲ କରିଛନ୍ତି ।

ଡଃ ବ୍ରହ୍ମା ରାଜ୍ୟର ବହୁ ଅଗ୍ରଣୀ ଅନୁଷ୍ଠାନଦ୍ୱାରା ମଧ୍ୟ ସମ୍ବର୍ଦ୍ଧିତ ହୋଇଛନ୍ତି । ତନ୍ମଧ୍ୟରୁ ସ୍କାର୍ଟ ସମ୍ମାନ, ଜୟଦେବ ସମ୍ମାନ, ମାଣିକ ବିଶ୍ୱନାଥ ସମ୍ମାନ, ଘୁଙ୍ଗୁର ସମ୍ମାନ, ଶିଶୁ ସାହିତ୍ୟ ଗବେଷଣା ପରିଷଦ ସମ୍ମାନ, ଶିଶୁ ସାହିତ୍ୟ ଲେଖକ ସମ୍ମେଳନ ଦଶନ୍ଧି ସମ୍ମାନ, ଶିଶୁ ବଜାର ସମ୍ମାନ, ସଂସାର ସମ୍ମାନ, ସତ୍ତା ସାହିତ୍ୟ ସଂସଦ ସମ୍ମାନ, ପରଶମଣି ସାମଗ୍ରିକ ଶିଶୁ ସାହିତ୍ୟ ସମ୍ମାନ ଆଦି ପ୍ରଧାନ ।

ଡଃ ବ୍ରହ୍ମାଙ୍କ ଜନ୍ମ ଟାଙ୍ଗୀ-ଚୌଦ୍ୱାରସ୍ଥିତ ଇତିହାସ ପ୍ରସିଦ୍ଧ ଜଳୌକା ପାହାଡ ପାଦଦେଶରେ ଅବସ୍ଥିତ ରୁଦ୍ରପୁର ଗ୍ରାମରେ । ସଂପ୍ରତି ସେ ପଟିଆ ରେଳଷ୍ଟେସନ୍ ନିକଟସ୍ଥ ମହାବୀର ବିହାରଠାରେ ଅବସ୍ଥାନ କରୁଛନ୍ତି ।

- ପ୍ରକାଶକ



SCART-ORISSA PUBLICATION